ଜ୍ୟୋତିଷ ଗ୍ରନ୍ଥ

# ଚମତ୍କାର ଚିନ୍ତାମଣିଃ ।

---

ପଣ୍ଡିତ ଶ୍ରୀ ମହୀଧର କୃତ ବିରଚିତ ।

ବିରଜା ପଞ୍ଜିକା ଖଣ୍ଡକାର

ଶ୍ରୀ ଗୌରାଙ୍ଗ ମହାପାତ୍ରଙ୍କ କର୍ତ୍ତୃକ

ଉତ୍କଳ ଭାଷାରେ ଅନୁବାଦିତ ।

---

ଶ୍ରୀ ନିତ୍ୟାନନ୍ଦ ସାହୁଙ୍କ ଦ୍ୱାରା

ଦ୍ୱିତୀୟବାର ପ୍ରକାଶିତ ।

ଅରୁଣୋଦୟ ଯନ୍ତ୍ରାଳୟର ମେସିନ୍‌ଯନ୍ତ୍ରେ ମୁଦ୍ରିତ ।

CUTTACK

PRINTED BY NITYANANDA SAHOO

AT THE ARUNODAYA PRESS

1923

ମୂଲ୍ୟ ୫ ° । ଚୁରଅଣା ।

# ଚମତ୍କାର ଚିନ୍ତାମଣି ।



## ରବିଭାବ ଫଳଂ ।

ତନୁସ୍ଥୋରବିସ୍ତୁଙ୍ଗଯଷ୍ଟିଂ ବିଧତ୍ତେ ମନଃ ସନ୍ତପେଦ୍ଦାରଦାୟାଦ୍ଦବର୍ଗାତ୍ ।
ବପୁଃ ପୀଡ୍ୟତେ ବାତ୍ତପିତ୍ତେନ ନିତ୍ୟଂ ସବୈ ପର୍ଯ୍ୟଟନ୍ ହ୍ରାସବୃଦ୍ଧିଂ ପ୍ରୟାତି

ଅର୍ଥ ।—ଜନ୍ମ ସମୟେ ରବି ଲଗ୍ନଭାବରେ ଥିଲେ ମନୁଷ୍ୟର ଶରୀର ଦୁର୍ବଳ ଓ କ୍ଷୀଣ ହୁଅଇ । ସ୍ତ୍ରୀ ନିମନ୍ତେ ଅଥବା ଅଭାବେ ବନ୍ଧୁବର୍ଗାଦି ବିରୁଦ୍ଧେ ସର୍ବଦା ମନସ୍ତାପ ହେଉଥାଇ । ବାୟୁ ପିତ୍ତଯୁକ୍ତ ଶରୀର ହେତୁ ନିତ୍ୟ କ୍ଲେଶଭୋଗ କରଇ । ବିଦେଶବାସୀ ହୋଇ ଏକସ୍ଥାନରେ ସ୍ଥିତ ନ ହୋଇ ବହୁସ୍ଥାନରେ ଭ୍ରମଣକାରୀ ହୁଅଇ, ସମୟେ୨ ବିଶେଷ ଧନଲାଭ ଓ ସମୟେ୨ ଧନର ନିତାନ୍ତ ଅଭାବ ହେତୁ ସୁଖ ଓ ଦୁଃଖରେ କାଳଯାପନ କରଥାଏ । ୧ ।

ଧନେ ଯସ୍ୟ ଭାନୁଃସଭାଗ୍ୟାଧିକଃସ୍ୟାଚ୍ଚତୁଷ୍ପାତ୍ସୁଖଂ ସଦ୍ବ୍ୟୟେ ସ୍ୱସ୍ୟାତି ।
କୁଟୁମ୍ବେ କଲିର୍ଜାୟୁଯାଜକାୟୁତେଽପି କ୍ରିୟା ନିଷ୍ଫଲାଯାତି ଲାଭସ୍ୟ ହେତୋଃ

ରବି ଧନ ଭାବରେ ଥିଲେ ମନୁଷ୍ୟ ଐଶ୍ୱର୍ଯ୍ୟଭୋଗୀ ( ଭାଗ୍ୟବାନ୍ ) ହୁଅଇ । ଗୋ-ଅଶ୍ୱ-ହସ୍ତୀ ଆଦି ଚତୁଷ୍ପଦ ଜୀବ ବହୁତ ହୁଅନ୍ତି । ସଦ୍ବ୍ୟୟକାରୀ ଓ ଅର୍ଥସଞ୍ଚୟୀ ହୁଅଇ, ସ୍ୱ ସ୍ତ୍ରୀବଶରେ ସ୍ୱକୁଟୁମ୍ବାଦିରେ କଳହକର୍ତ୍ତା, ଲାଭକରିବା ନିମିତ୍ତ ଯେ କିଛି କାର୍ଯ୍ୟକରେ ତାହା ପ୍ରାୟ ନିଷ୍ଫଳ ହୋଇଥାଏ । ୨ ।

ତୃତୀୟେ ଯଦାହର୍ମ୍ମଣିର୍ଜନ୍ମକାଳେ ପ୍ରତାପାଧିକଃ ବିକ୍ରମଂ ଗୃତନୋତି ।
ତଦାସୋଦରୈସ୍ତୁପ୍ୟତେତୀର୍ଥଗୃଶ୍ଚସଦାରଙ୍ଗଯୁକ୍ତଃ ସଙ୍ଗଭେଶଂ ନରେଶାତ୍ ॥

ରବି ତୃତୀୟ ଭାବରେ ଥିଲେ ମନୁଷ୍ୟ ପ୍ରତାପବାନ୍, ବିକ୍ରମଶାଳୀ ଓ ଧୃତଗାମୀ ହୁଅଇ ଏବଂ ଭ୍ରାତୃସହ ବିବାଦ, ସେହି ବିବାଦ ହେତୁ ଗୃହ ତ୍ୟାଗକରି ତୀର୍ଥବାସୀ ହୁଅଇ । ସର୍ବଦା ଶତ୍ରୁଠାରୁ ଜୟଲାଭ, ରାଜକାର୍ଯ୍ୟରେ ନିଯୁକ୍ତ ବା ରାଜପାର୍ଶ୍ୱରେ ରହି କାଳଯାପନ କରିଥାଏ ।୩।

ତୁରୀୟେ ଦିନେଶେଽତିଶୋକାଧିକାରୀଜନଃ ଫଲଭେଦ୍ଧି ଗୃହଂ ବନ୍ଧୁତୋଽପ
ପ୍ରବାସୀ ବିପକ୍ଷାଦ୍ଧିବେମାନଭଙ୍ଗଃ କଦାଚିନ୍ନ ଶାନ୍ତଂ ଭବେଦ୍ଧସ୍ୟରେତଃ ॥

ରବି ଚତୁର୍ଥ ଭାବରେ ଥିଲେ ମନୁଷ୍ୟର ଶରୀର ବିଶେଷ ସୁନ୍ଦର ହୁଅଇ । ବହୁଲୋକଙ୍କର ପ୍ରିୟପାତ୍ର ହୋଇଥାଏ ଏବଂ ବନ୍ଧୁ ବା ଭ୍ରାତୃଗଣ ସହିତରେ ବିରୋଧକାରୀ ହୁଅଇ । ବିଶେଷକାଳ ପ୍ରବାସରେ ଭୋଗ କରେ, ଶତ୍ରୁସହ ବିବାଦରେ ଜୟଲାଭ କରି ଶତ୍ରୁର ମାନଭଙ୍ଗ କରିଥାଏ, ସର୍ବଦା ତାହାର ମନ ଅସନ୍ତୁଷ୍ଟ ହେତୁ ଅଶାନ୍ତ ହୁଅଇ । ୪ ।

ସୁତସ୍ଥାନଗୋଦୂର୍ବଜାପତ୍ୟତାପୀ କୁଶାଗ୍ରମତିର୍ଭର୍ସ୍ଥରେ ମନ୍ତ୍ରବିଦ୍ୟା ।
ରତିର୍ବଞ୍ଚନେ ସଞ୍ଚକୋଽପିପ୍ରମାଦୀମୃତିଃ କ୍ରୋଡ଼ରୋଗାଦିଜାଭିରବିଣୀଯୁ । ୫ ।

ରବି ପଞ୍ଚମ ଭାବରେ ଥିଲେ ମନୁଷ୍ୟର ଜ୍ୟେଷ୍ଠପୁତ୍ର ଓ ଜ୍ୟେଷ୍ଠଭ୍ରାତୃ ଏମାନେ ନାଶ ହୁଅନ୍ତି । ଅତି ସୂକ୍ଷ୍ମବୁଦ୍ଧି ଓ ମନ୍ତ୍ରବିଦ୍ୟାରେ ପାରଙ୍ଗମ ହୁଅଇ । ସ୍ତ୍ରୀବଶ ହୋଇ ସେହି ସ୍ତ୍ରୀ ହସ୍ତେ ସମସ୍ତଧନ ସମର୍ପଣ କରିଥାଏ, ସେହି ଧନ ନିମନ୍ତେ ସମୟେ ସ୍ତ୍ରୀସହ ବିରୁଦ୍ଧ ( ବିବାଦ ) ହୁଅଇ, ନିଜ ଶରୀର କୁକ୍ଷିରୋଗାଦିରେ ପୀଡ଼ା ଭୋଗକରି ଓ ସେହିରୋଗରେ ପ୍ରାଣତ୍ୟାଗ ହୁଅଇ । ୫ ।

ରିପୂଧ୍ୱଂସକୃଦ୍‌ଭୂସ୍ଥରେ ଯସ୍ୟ ଷଷ୍ଠେ ତନୋତି ବ୍ୟୟଂ ରାଜତୋମିତ୍ରତୋବା
କୁଲେମାତୁରାପଚ୍ଚତୁଷ୍ପାଦତୋବା ପ୍ରୟାଣେ ନିଷାଦୈର୍ବିଷାଦଂ କରୋତି ॥

ରବି ଷଷ୍ଠ ଭାବରେ ଥିଲେ ମନୁଷ୍ୟ ଶତ୍ରୁଜୟୀ ହୁଅଇ, ସର୍ବଦା ମାମଲା ମୋକଦ୍ଦମାରେ ଅର୍ଥ ବ୍ୟୟ କରେ, ରାଜସହ ମିତ୍ରତା ହୋଇଥାଏ । ତାହାର ମାତୁଳକୁଳରେ ବିପଦ ହୁଅଇ । ଚତୁଷ୍ପାଦ ଜୀବଦ୍ୱାରା କ୍ଲେଶଭୋଗ ଓ ଚୋରଦ୍ୱାରା ସଞ୍ଚିତ ଧନ ଅପହରଣ ହୁଅଇ । ୬ ।

ଦ୍ୟୂନାଥୋଯଦାଦ୍ୟୂନଯାତୋନରସ୍ୟ ପ୍ରିୟାତାପନଂ ପୌଣ୍ଡ୍ରପୀଡ଼ା ଚ ଚିନ୍ତା ।
ଭବେଦ୍‌ବୃଦ୍ଧିଲବ୍ଧିଃ କ୍ରୟେବିକ୍ରୟେଽପି ପ୍ରତିସ୍ପର୍ଦ୍ଧ୍ୟାନୈତିନିଦ୍ରାଂ କଦାଚିତ୍

ରବି ସପ୍ତମ ଭାବରେ ଥିଲେ ମନୁଷ୍ୟର ସ୍ତ୍ରୀ ରୋଗଯୁକ୍ତ, ସେହିକାରଣେ ମନସ୍ତାପ ଏବଂ ସମୟେ୨ ସ୍ୱଦେହ ରୋଗଗ୍ରସ୍ତ ହୋଇବାରୁ ସର୍ବଦା ଚିନ୍ତା-ଯୁକ୍ତ ହୁଅଇ । ବାଣିଜ୍ୟାଦିରେ ଯେ କିଛି କ୍ରୟ ବିକ୍ରୟ କରେ ତହିଁରେ କ୍ଷତିଗ୍ରସ୍ତ ( ଅଲାଭ ) ହୁଅଇ, ସେ ଯେ କାର୍ଯ୍ୟାଦି କରୁଥାଏ ସେହି କାର୍ଯ୍ୟକୁ ଯେ ଅନ୍ୟ ଲୋକମାନେ କରୁଥାନ୍ତି ତାହାଙ୍କୁ ପରାଭବ ଦେବା ଉଦ୍ଦେଶ୍ୟରେ ଏପରି ଚିନ୍ତାଯୁକ୍ତ ହୁଅଇ ଯେ ତାହାକୁ ପ୍ରାୟ ନିଦ୍ରା ହୁଅଇ ନାହିଁ । କିନ୍ତୁ ପରାଭବ ଦେବାର ଅକ୍ଷମ ହୁଅଇ । ୭ ।

କ୍ରିୟାଲକ୍ଷ୍ମୀଂ ହୃଷ୍ଟମେକଷ୍ଟଭାଜଂ ବିଦେଶୀୟଦାରାନ୍ ଭଜେଦ୍ଧାପ୍ୟବସ୍ତୁ ।
ବପୁକ୍ଷୀଣତାଦଦ୍ୟତୋବାଽବଲମ୍ବାଦ୍ଧି ପଦ୍‌ଗୁହ୍ୟତା ଭାନୁରୁଗ୍ରଂ ବିଧତ୍ତେ ।୮।

ରବି ଅଷ୍ଟମ ଭାବରେ ଥିଲେ ମନୁଷ୍ୟ ବ୍ୟବହାରରେ ଧୂର୍ତ୍ତ, ଧୂର୍ତ୍ତପଣ ହେତୁ କଷ୍ଟଭୋଗ ସ୍ୱଜାତୀୟ ସ୍ତ୍ରୀ ବା ବେଶ୍ୟା ସହିତରେ ଗୃହବାସ ଅଗମ୍ୟଗାମୀ ହୁଅଇ, ଅଭକ୍ଷ୍ୟଭକ୍ଷଣେ ସନ୍ତୁଷ୍ଟ ହୋଇଥାଏ । ଆଳସ୍ୟବୃଦ୍ଧି ହେତୁ ଧନହାନି ହୁଅଇ । ଚୌର ସଂସର୍ଗ ଯୋଗୁଁ ଗୁପ୍ତ ବିପତ୍ତି ଭୋଗ କରେ । ନୀଚ ସ୍ତ୍ରୀ ସଂସର୍ଗ ଭୋଗ ) ଯୋଗେ ଗୁପ୍ତରୋଗ ( ଉପଦଂଶାଦି ) ହୁଅଇ । ୮ ।

ଧବାନାମ୍ନକେବୁଷ୍ଟତାକୋଣଯାତେ ନଗୃପ୍ନୋକ୍ତ ଚିନ୍ତାବିରମୋଽସ୍ୟଚେତଃ
ତପସ୍ତୁର୍ଯ୍ୟାଽନିଷ୍ଟୟାପି ପ୍ରୟାତି କ୍ରିୟା ତୁଙ୍ଗତାଂତପ୍ୟତେ ସୋଦରେଣ ।୯।

ରବି ନବମ ଭାବରେ ଥିଲେ ମନୁଷ୍ୟ ତପ ଜପ ଧ୍ୟାନ ବନ୍ଦନା ନିୟମା-ଦିରେ ପାରଦର୍ଶିତା ଲାଭ କରେ, ସେହେତୁ ଲୋକରେ ପୂଜନୀୟ ହୁଏ ମଧ୍ୟ କୃତକାର୍ଯ୍ୟ ହେତୁ ଦାମ୍ଭିକପଣ ପ୍ରକାଶ କରେ । ଭାଇମାନଙ୍କ ନିମିତ୍ତରେ ସନ୍ତାପଯୁକ୍ତ ହୋଇଥାଏ ଅର୍ଥଲାଭରେ ଇଚ୍ଛୁକ ଯେ କିଛି ଲାଭ କରେ ସେ ଲାଭରେ ଅଶାନ୍ତ ଓ ଚିନ୍ତାକୁଳ ହୁଅଇ । ୯ ।

ପ୍ରୟାତେଽମ୍ବମାନ୍ ଯସ୍ୟମେଷୂରଣେଽସ୍ୟଶ୍ରମଃସିଦ୍ଧିଦୋ ରାଜନୂଲ୍ୟାନରସ୍ୟ ।
ଜନନ୍ୟାସ୍ତଥାଯାତନାମାତନୋତି କ୍ଷମଂ କ୍ରମେଦ୍ଧିକ୍ରୋଭୈର୍ବୈପ୍ରଯୋଗଃ ।୧୦।

ରବି ଦଶମ ଭାବରେ ଥିଲେ ମନୁଷ୍ୟ ମାତୃ କ୍ଲେଶରେ ପତିତ ହୁଅଇ । ନିଜେ ପରାକ୍ରମୀ ହୁଏ, ରାଜତୁଲ୍ୟ ଭୋଗ କରେ, ସେ ସକଳ କାର୍ଯ୍ୟେ ଉଦ୍‌ଯୋଗୀ ଓ ତହିଁରୁ ଯଶକାରୀହୁଅଇ, ପ୍ରିୟଜନ ଓ ସ୍ତ୍ରୀ ବା ପୁତ୍ର ଏମାନଙ୍କରେ ବିମନ ବା ତାହାଙ୍କ ନିମନ୍ତେ ଚିନ୍ତାଯୁକ୍ତ ହୋଇଥାଏ ॥

ରବୌଫଲଭୋଗ୍ୟଂ ସ୍ୱଲ୍ପଭୋଗପଯାତେ ନୃପଦ୍ୱାରତୋରାଜମୁଦ୍ରାଧିକାରଃ ।
ପ୍ରତାପାନଳେଶତ୍ରବଃ ସମ୍ପତନ୍ତିପ୍ରିୟୋନେକଧା ଦୁଃଖଭଙ୍ଗୋଭିବାନାଂ ॥

ରବି ଏକାଦଶ ଭାବରେ ଥିଲେ ମନୁଷ୍ୟ ରାଜଦ୍ୱାରେ ମୁଦ୍ରାଧିକାର ( ଖଜଣାଖାନା ) ଅଧରେ ମାଲିକ ହୁଅଇ ସେ ଅନେକପ୍ରକାର ଶ୍ରୀସୁଖ ଭୋଗ କରେ । ନିଜପ୍ରତାପ ଦ୍ୱାରା ଶତ୍ରୁମାନଙ୍କୁ ଦହନ କରଇ । ତାହାର ପୁତ୍ରମାନେ ସୁଖୀ ନ ହୋଇ ଦୁଃଖଭୋଗ କରଥାନ୍ତି । ୧୧ ।

ରବଦ୍ୱାଦଶେ ନେତ୍ରରୋଗଂ କରୋତି ବିପକ୍ଷାଦ୍ରବେ ଜାଯତେ ସୌଖ୍ୟଶ୍ରୀଃ
ସ୍ଥିତିଲବଧ୍ୟସ୍ୱାଳ୍ପାଯତେ ଦେହଦୁଃଖଂ ପିତୃବ୍ୟାପଦୋହାନିରର୍ଥ ପ୍ରଦେଶେ ॥

ରବି ଦ୍ୱାଦଶ ଭାବରେ ଥିଲେ ମନୁଷ୍ୟର ନେତ୍ର ରୋଗ ହେତୁ ମନ୍ଦ-ଦୃଷ୍ଟି ହୁଅଇ । ସେ ଶତ୍ରୁଠାରେ ଜୟଲାଭ କରେ ଏପର ଜୟଲାଭକରେ ଜୟ ଡଙ୍କା ( ବାଦ୍ୟ ) ଘୋଷରେ ଘୋଷଣା ହୁଅଇ । ତଥାଚ ବିଶେଷ କ୍ଷତଗ୍ରସ୍ତ ଓ ଅର୍ଥହାନି ହୁଏ । ନିଜ ଶରୀର ରୋଗଗ୍ରସ୍ତ ଓ ତାହାର ପିତୃ-ଅଧ ଗୁରୁଜନେ କ୍ଲେଶଭୋଗ କରନ୍ତି । ବିଦେଶରେ ଚୋର ବା ଖଣ୍ଟ-ଦ୍ୱାରା ଧନ ଅପହରଣ ହୁଏ, ତହିଁ ନିମନ୍ତେ ଯେ ପ୍ରତିକାର ଫଳ ତାହାଙ୍କୁ ଦେବାକୁ ଇଚ୍ଛାକରି ଚେଷ୍ଟା କରେ ସେଥିରେ ଯଶ ନ ପାଇ ପରାସ୍ତ ହୋଇଥାଏ । ୧୨ ।

—o:o:o—

## ଚନ୍ଦ୍ର ଭାବ ଫଳଂ ।

ବପୁର୍ଗୋକୁଳୋରାଜଗଃ ସନ୍ ବପୁଃସ୍ତ୍ରୋଧନାଢ୍ୟ ଲାବଣ୍ୟମାନନ୍ଦପୂର୍ଣ୍ଣଂ ।
ବିପରୀତେଧର୍ମଂ କ୍ଷୀଣଦେହଂ ଦରିଦ୍ରଂଜଡଂ ଶ୍ରୋତ୍ରହୀନଂନରଂ ଶେଷଲଗ୍ନେ

ଅର୍ଥ ।—ଚନ୍ଦ୍ର ଜନ୍ମ ଲଗ୍ନଗତ ମେଷ ବୃଷ କର୍କଟ ରାଶିରେ ଥିଲେ ମନୁଷ୍ୟର ଶତ୍ରୁ ନିତ୍ୟ ଉଦାରସ୍ୱଭାବ ବହୁଧନରେ ପରିପୂର୍ଣ୍ଣ ହୁଅଇ । ଏହି ତିନିରାଶି ଭିନ୍ନ ଅନ୍ୟ ରାଶିମାନଙ୍କରେ ଚନ୍ଦ୍ର ଲଗ୍ନଗତ ହେଲେ ମନୁଷ୍ୟ କ୍ଷୀଣଶରୀର ଦ୍ରବ୍ୟହୀନ ଜଡ଼ସ୍ୱଭାବ ବା କାଲ ହୁଅଇ, ବିଶେଷତଃ ଯେ କ ରାଶିରେ ଚନ୍ଦ୍ର ଲଗ୍ନଗତ ହେଉନ୍ତୁ, ଶୁକ୍ଳପକ୍ଷରେ ଶୁଭଦାତା ଓ କୃଷ୍ଣପକ୍ଷରେ ଅଶୁଭ ଫଳଦାତା ଅଟନ୍ତି । ୧ ।

ହିମାଂଶୌବିତ୍ତସ୍ଥାନଗେ ଧାନ୍ୟଲାଭଃ
ଶରୀରେଽତିସୌଖ୍ୟଂ ବିଳାସୋଽଙ୍ଗନାନାଂ ।
କୁଟୁମ୍ବେ ରତିର୍ଜାୟତେ ତସ୍ୟ ତୁଚ୍ଛଂ
ବଶଂ ଦର୍ଶନେ ଯାତି ଦେବାଙ୍ଗନାପି । ୨ ।

ଚନ୍ଦ୍ର ଧନ ଭାବରେ ଥିଲେ ମନୁଷ୍ୟ ଧନଧାନ୍ୟରେ ପରିପୂର୍ଣ୍ଣ ହୁଅଇ । ସ୍ୱ-ଶରୀରେ ସୁଖଭୋଗ କରଇ । କୁଟୁମ୍ବମାନଙ୍କ ସହିତ ପ୍ରୀତିକର ହୋଇ ସମୟେ୨ ଅପ୍ରୀତିକାରୀ ହୋଇ କଳହ କରଥାଏ, ତାହାର ଶରୀର ବିଶେଷ ସୁନ୍ଦର ହୁଏ, ସେ ରୂପକୁ ( ଦେବାଙ୍ଗନା ) ଉତ୍ତମ ସ୍ତ୍ରୀମାନେ ଦେଖି ତାହାର ବଶବର୍ତ୍ତୀ ହୁଅନ୍ତି । ୨ ।

ବିଧୌବିକ୍ରମେବିକ୍ରମେଣୈତି ବିତ୍ତଂ ତପସ୍ୱୀ ଭବେଦ୍ଭାମିନୀରଞ୍ଜିତୋଽପି ।
କିଯୂହ ବ୍ରାତୃସ୍ନେହାହତଂ ତସ୍ୟ ଶର୍ମ ପ୍ରତାପୋଲ୍ଲସୋ ଧର୍ମିଣୋ ବେଜମୃତ୍ୟୁ୍ୟା

ଚନ୍ଦ୍ର ତୃତୀୟ ଭାବରେ ଥିଲେ ମନୁଷ୍ୟ ବିକ୍ରମଶାଳୀ ଉଦ୍ୟୋଗୀ ଧନୋପାର୍ଜନେ ଶକ୍ତ ତପସ୍ୱୀ ( ଧାର୍ମିକ ) ଉତ୍ତମ ସ୍ତ୍ରୀ-ଭୋଗୀ ଧର୍ମପରାୟଣରେ ଖ୍ୟାତବନ୍ତ ଭ୍ରାତୃସୁଖେ ସୁଖୀ ପ୍ରତାପବାନ୍ ଉଜ୍ଜ୍ୱଳତା ବିଜୟକାରୀ ଓ ଦାନୀ ହୁଅଇ । ୩ ।

ଯଦାବନ୍ଧୁଗୋବାନ୍ଧବୈରନ୍ବିଜନ୍ମା ନୃପଦ୍ୱାରସର୍ବାଧିକାରୀ ସଦୈବ ।
ବୟସ୍ୟାଦମେତାଦୃଶଂ ନୈବସୌଖ୍ୟଂ ସୁତସ୍ତ୍ରୀଗଣୋତୋଷମାପ୍ନୋତିସମ୍ୟକ୍

ଚନ୍ଦ୍ର ଚତୁର୍ଥ ଭାବରେ ଥିଲେ ମନୁଷ୍ୟ ବାନ୍ଧବ ଦ୍ୱାରା ସୁଖଭୋଗ କରେ ସେ ରାଜଦ୍ୱାରେ ସର୍ବାଧିକାରୀ ହୋଇଥାଏ । ବୟସକାଳେ ସୁଖ-

ସ୍ଥାନ ହୁଏ । ମଧ୍ୟ ବସ୍ତ୍ରପେ ସ୍ତ୍ରୀ ପୁତ୍ରାଦିରେ ସନ୍ତୁଷ୍ଟ ହୋଇ ବିଶେଷ ଆନ-
ନ୍ଦରେ କାଳାତିତ କରଇ । ୪ ।

ଯଦାପଞ୍ଚମେ ଯସ୍ୟ ନିଶାକରାଃଥାଦଦାତିହ୍ୟ ସନ୍ତାନ ସନ୍ତୋଷ ମେବ ।
ମତି ର୍ନିର୍ମଳାରତ୍ନଲାଭଂ ଚ ଭୂମିଂ କୁସୀଦେନନାନାପ୍ରଯୋଗୈର୍ବ୍ୟାବସାୟୈହୃ

ଚନ୍ଦ୍ର ପଞ୍ଚମ ଭାବରେ ଥିଲେ ମନୁଷ୍ୟର ଉତ୍ତମ ସନ୍ତାନଲାଭ ହୁଅଇ । ନିଜବୁଦ୍ଧି ସର୍ବଦା ନିର୍ମଳ ହୋଇଥାଏ, ସେ ମଣି ମୁକ୍ତାଦିରେ ମଣ୍ଡିତ ଭୂମ୍ୟାଧିକାରୀ ହୁଅଇ । ନାନାଦି ବ୍ୟବସାୟ କରେ, ବ୍ୟବସାୟ ଯୋଗେ ଧନବାନ୍ ହୋଇଥାଏ । ୫ ।

ରିପୌଭାଜତେ ବିଗ୍ରହେଣାଦିରାଜା ଜିତାସ୍ତେଽପିଭୂପୈ ର୍ବଧୌଯଭବନ୍ତ ।
ତଦଗ୍ରେରଯୋନଷ୍ଟ ଭାଭୂସ୍ତ୍ରସୋଽପିପ୍ରତାପୋଜ୍ଜ୍ୱଳୋମାତୃଶୀଳୋନତଦ୍ୱହ୍ନ

ଚନ୍ଦ୍ର ଷଷ୍ଠ ଭାବରେ ଥିଲେ ମନୁଷ୍ୟର ଉତ୍କୃଷ୍ଟ ଲୋକମାନେ ଶତ୍ରୁ ହୁଅନ୍ତି, ମଧ୍ୟ ରାଜା ସହିତ ଶତ୍ରୁତା ହେଲେ ସୁଦ୍ଧା ଶତ୍ରୁଜୟୀ ହୋଇ-ଥାଏ । ସେ ପ୍ରତାପବାନ୍ ଓ ମାତୃଭକ୍ତ ହୁଅଇ, ତାହାର ଗୃହରେ କି ତାହାର ଅଗେ ଉତ୍ତମ ଅଲୋକ ( ଅଲୁଅ ) ଦ୍ୱାରା ଉଜ୍ଜ୍ୱଳତା ହୋଇଥାଏ । ୬ ।

ଦଦେଦ୍ଧାରଣଂ ସପ୍ତମେ ଶୀତରଶ୍ମି ର୍ଧନାଢ୍ୟଂ ଭବେଦଧ୍ୱବାଣିଜ୍ୟତୋଽପି ।
ରତିଂ ସ୍ତ୍ରୀଜନେଽନଷ୍ଟଭୁକ୍ ଲୁବ୍ଧଚେତାଃ କୃଶଃକୃଷ୍ଣପକ୍ଷେ ବିପକ୍ଷାଭିଭୂତି

ଚନ୍ଦ୍ର ସପ୍ତମ ଭାବରେ ଥିଲେ ମନୁଷ୍ୟ ସ୍ତ୍ରୀ-ସୁଖେ ସୁଖୀ ହୁଅଇ, ସେ ବିଦେଶ ଓ ସ୍ୱଦେଶରେ ବାଣିଜ୍ୟଦ୍ୱାରା ଧନଲାଭ କରି ଧନବାନ୍‌ହୋଇ-ଥାଏ । ରତିଶାସ୍ତ୍ରରେ ନିପୁଣତା ଯୋଗୁଁ ସ୍ତ୍ରୀମାନଙ୍କର ମନ ସନ୍ତୋଷ କରିଥାଏ । ସର୍ବଦା ମିଷ୍ଟାନ୍ନଭୋଗୀ ହୁଅଇ । କୃଷ୍ଣପକ୍ଷରେ ଜନ୍ମ ହୋଇ-ଥିଲେ ( କୃଶ ) ତାହାର ସ୍ତ୍ରୀର ଶରୀର କ୍ଷୀଣସ୍ୱଭାବ ବା ରୋଗଗ୍ରସ୍ତ ହୋଇଥାଏ । ସର୍ବଦା ଶତ୍ରୁଜନମାନଙ୍କର ବଶୀଭୂତ ହୋଇଥାଏ ॥

ସଭାବଦ୍ୟତେ ବୈଷ୍ଣୋତସ୍ୟଗେହେ ପଟେଚଳଦ୍ୱିଁଟେଛ୍ୱାଥମୁଦେ୍ୱାଦକାନ୍ତ ।
ମହାବ୍ୟାଧୟୋ ଭୀତୟୋବାରିଭୂତାଃ ଶରୀରେକ୍ଲେଶକୃଦ୍ରନ୍ଧ୍ରଗୋନ୍ୟଷ୍ଟମସ୍ଥଃ ॥

ଚନ୍ଦ୍ର ଅଷ୍ଟମ ଭାବରେ ଥିଲେ ମନୁଷ୍ୟ ରୋଗଗ୍ରସ୍ତ ହେବାରୁ ତାହାର ଗୃହରେ ନିତ୍ୟ ବୈଦ୍ୟଙ୍କଦ୍ୱାର ଚରଣ ହେଉଥାଏ, ସେ ଔଷଧ କାଥ ମୁଗପାକ ଜଳ ଆଦି ପଥ୍ୟ ସାମଗ୍ରୀ ଭୋଜନ କରେ । ଜଳ ସାଧାରଣ ମତ ବ୍ୟବହାର କରିବାକୁ ଘୃଣାଜାତ ବା ଭୟ କରୁଥାଏ । ମହାବ୍ୟାଧି ( କୋଷ୍ଠ ) ବା ପାଣ୍ଡୁ କାମଳ ରୋଗଗ୍ରସ୍ତ ଦ୍ୱାରା ପୀଡ଼ା ଭୋଗ କରେ । ଦୁଷ୍ଟଜନସହ ବିବାଦ କରି ଫଳକଷ୍ଟାପନ୍ନ ( ବିପଦ ) ଗ୍ରସ୍ତ ହୁଅଇ । ୮ ।

ତପୋଭବଗସ୍ତାରକେଶୋଜନସ୍ୟ ପ୍ରଜାଷ୍ଟଦ୍ୱିଜାବନ୍ଦନସ୍ତଂ ସ୍ତୁବନ୍ତି ।
ଭବତ୍ୟେବଭାଗ୍ୟାଧିକୋ ଯୌବନାଦେଃ ଶରୀରେ ସୁଖଂ ଚନ୍ଦ୍ରବସ୍ଥାହଫଳ

ଚନ୍ଦ୍ର ନବମ ଭାବରେ ଥିଲେ ମନୁଷ୍ୟଙ୍କୁ ପ୍ରଜାଜନ ( ଦ୍ୱିଜାଦି ) ବ୍ରାହ୍ମଣାଦି ଜାତିମାନେ ସ୍ତୁତି ବନ୍ଦନାଦି କରୁଥାନ୍ତି ସେ ଯୌବନକାଳରେ ଭାଗ୍ୟବାନ୍ ହୁଅଇ, ସର୍ବଦା ତାହାର ଶରୀର ଅରୋଗ୍ୟ ହୋଇଥାଏ ଓ ସୁଖଭୋଗ କରେ । କାର୍ଯ୍ୟ ପରିଣତେ ଉତ୍ତମ ସାହସ ( ଚେଷ୍ଟାବାନ୍ ) ହୁଅଇ । ୯ ।

ସୁଖଂ ବାନ୍ଧବେଭ୍ୟଃ ଖଗେ ଧର୍ମକର୍ମା
ସମୁଦ୍ରାଙ୍ଗଯେଶଂ ନରେଶୋ ହତୋଽପି ।
ନବୀନାଙ୍ଗନାବୈଭବେ ସୁପ୍ରିୟତ୍ୱଂ
ପୁରେଜାତକେ ସୌଖ୍ୟମଳ୍ପଂ କରୋତି । ୧୦ ।

ଚନ୍ଦ୍ର ଦଶମ ଭାବରେ ଥିଲେ ମନୁଷ୍ୟ ବାନ୍ଧବଯୋଗୁଁ ସୁଖଭୋଗୀ ଓ ଧାର୍ମିକ ହୁଅଇ, ସେ ଉତ୍ତମ କାର୍ଯ୍ୟ କରିବାକୁ ଚେଷ୍ଟାବାନ୍ ହୋଇ କାର୍ଯ୍ୟ ସାଧନ କରେ, ରାଜା ମହାରାଜାଙ୍କଠାରୁ ସମ୍ମାନ ପ୍ରାପ୍ତ ହୁଏ, ନବୀନ ସ୍ତ୍ରୀ ଭୋଗକରେ, ପୁତ୍ର ବା ଶୂକରାଦି ଦ୍ୱାରା ଅଳ୍ପ ସୁଖଭୋଗୀ ହୁଅଇ । ୧୦ ।

ଲଭେଭୂମିପାଦନ୍ଦୁନା ଲାଭଗେନ ପ୍ରତିଷ୍ଠାଧିକାରାମ୍ବରାଣି କ୍ରମେଣ ।
କ୍ଷିତ୍ୟୋଽଥସ୍ୱଂତ୍ୟୋଽନ୍ତଃପୁରେବଶମନ୍ତି ଜିଯ୍ୟାବୈକୁତା କନ୍ୟକା ବସ୍ତୁଲାଭଃ ॥

ଚନ୍ଦ୍ର ଲାଭଭାବରେ ଥିଲେ ମନୁଷ୍ୟ ରାଜାଙ୍କଠାରୁ ଉତ୍ତମ ଅଧିକାର ଓ ବସ୍ତ୍ର ମୁକୁଟାଦି ପ୍ରାପ୍ତ ହୋଇ ରାଜବାଟିର ଅନ୍ତଃପୁର ଚର୍ଚ୍ଚାଦି ବୁଝୁଥାଏ, ସେ ଜିଯ୍ୟାଶ୍ରିତ ହୁଅଇ, ସ୍ତ୍ରୀଠାରୁ ଧନଲାଭ କରେ । ୧୧ ।

ଶଶୀ ଦ୍ୱାଦଶେ ଶତ୍ରୁନେତ୍ରାଦିଚିନ୍ତା ବିଚିନ୍ତ୍ୟଃ ସଦାସଦ୍‌ବ୍ୟୟୋ ମଙ୍ଗଳେନ ।
ପିତୃବ୍ୟାଦିମାନାଦିତୋଽନନ୍ତବିଷାଦୋ ନଗୃହ୍ଣାତି କାମଂ ପ୍ରିୟାଳ୍ପପ୍ରିୟସ୍ତୁଷ୍ଟଂ ॥

ଚନ୍ଦ୍ର ବ୍ୟୟ ଭାବରେ ଥିଲେ ମନୁଷ୍ୟ ନେତ୍ରରୋଗ ଓ ଶତ୍ରୁଦ୍ୱାରା ସର୍ବଦା ପୀଡାଭୋଗ କରେ, ସେ ସତ୍କାର୍ଯ୍ୟ ଅର୍ଥ ବ୍ୟୟୀ ହୁଏ, ପିତୃ-ମାତୃ-ସୁଖ ନ ପାଇବାରୁ ସର୍ବଦା ହୃଦୟ ସନ୍ତପ୍ତ ( ଚିନ୍ତାଯୁକ୍ତ ) ହୁଅଇ, କାମଭୋଗ ଅଳ୍ପ ଓ ସ୍ତ୍ରୀ ସୁଖ ଅଳ୍ପ ହେତୁ ସ୍ତ୍ରୀ ଯେହ୍ନ ସନ୍ତୁଷ୍ଟଭାବ ପ୍ରକାଶ ହୁଅଇ ନାହିଁ । ୧୨ ।



## ମଙ୍ଗଳଭାବ ଫଳଂ ।

ବିଲଗ୍ନେ କୁଜେ ଦଣ୍ଡଲୋହାଦିଭୀତିସ୍ତ୍ରିପେନ୍ଦ୍ରାସଂ କେଶଶ୍ଚ କିଂ ଦ୍ୱିଭାର୍ଯ୍ୟଃ ।
କଳତ୍ରାଦିଘାତଃ ଶିରୋନେତ୍ରପୀଡ଼ା ରିପାକେ ଫଳାନାଂ ସଦୈବୋପସର୍ଗଃ ॥

ମଙ୍ଗଳ ଲଗ୍ନଭାବରେ ଥିଲେ ମନୁଷ୍ୟ ରାଜଦଣ୍ଡ (କଇଦୀ) ଆଦି ଦଣ୍ଡ-ଭୋଗ କରେ, ତାହାର ସ୍ତ୍ରୀ ପୁତ୍ରମାନେ ହାନି ହୁଅନ୍ତି, ଦୁଇ ବା ତିନି ସ୍ତ୍ରୀ ବିବାହ ହେଲେ ସୁଦ୍ଧା ସ୍ତ୍ରୀଭୋଗେ ସୁଖହୀନ ହୁଅଇ, ସେ ନେତ୍ର ଓ ଶିର-ରୋଗରେ ପୀଡ଼ିତହୋଇଥାଏ, କୃତକାର୍ଯ୍ୟାଦିରେ ସିଦ୍ଧିପ୍ରାପ୍ତି ଉଦ୍‌ଯୋଗ କରେ, କଲେ ସୁଦ୍ଧା ତାହାର ମନସ୍ତାପ ଓ କାର୍ଯ୍ୟେ ବାଧା ଘଟୁଥାଏ, କାର୍ଯ୍ୟାଦିରେ ଯେ କିଛି ଲାଭ କରେ ତହିଁରେ ନିଜେ ଭୋଗୀ ନ ହୋଇ ସେ ଲଭ୍ୟକୁ ଅନ୍ୟ ଲୋକମାନେ ଭୋଗ କରଥାନ୍ତି । ୧ ।

ଭବେତ୍ତସ୍ୟ କିଂ ବିଦ୍ୟମାନେ କୁଟୁମ୍ବେ
ଧନେଽଙ୍ଗାରକୋ ଯସ୍ୟ ଲବ୍ଧେ ଧନେ କିଂ ।
ଯଥା ଜାୟତେ ମର୍କଟଃ କଣ୍ଠହାରଂ
ପୁନଃ ସନ୍ମୁଖଂ କୋଭିବେଦ୍ଧାଦିଭଗ୍ନଃ । ୨ ।

ମଙ୍ଗଳ ଧନଭାବରେ ଥିଲେ ମନୁଷ୍ୟ ଉଦ୍‌ଯୋଗୀ ଧନ ଲାଭକାରୀ ହୁଅଇ, କିନ୍ତୁ ତାହାର ଧନରେ କୁଟୁମ୍ବମାନେ ସୁଖୀ ହୁଅନ୍ତି ନାହିଁ, ସେ ଧନରେ ଅପର ଲୋକମାନେ ସୁଖୀ ହୁଅନ୍ତି, ଯେପରି ମାଙ୍କଡ଼ ଗଳାରେ

ବନ୍ଧୁଦ୍ୱାର ଦେଲେ ସେ ତାହାର ମର୍ଯ୍ୟାଦା ନ ଜାଣି ତାଙ୍କୁ ତ୍ୟାଗ ବା ଭଗ୍ନକରେ ସେହିପରି ମନୁଷ୍ୟ ଧନ ଉପାର୍ଜ୍ଜନ କରି ତ୍ୟାଗ କରେ, ଅଳ୍ପ ବିଦ୍ୟାବାନ୍ ହୋଇ ଏପରି କହିବା କ୍ଷମତା ହୁଅଇ ଯେ ତାହାର ସମ୍ମୁଖରେ ବାଦାନୁବାଦରେ ଅନ୍ୟ ଲୋକ କହିବାରେ ଅସମର୍ଥ ହୁଅନ୍ତି ।୨।

କୁତୋ ବାହୁବୀର୍ଯ୍ୟଂ କୁତୋ ବାହିଲକ୍ଷ୍ମୀ
ସ୍ତୃତୀୟେ ନ ଚେଲ୍ଲଙ୍ଗଳୋ ମାନବାନାଂ ।
ସହୋତ୍ଥ ବ୍ୟଥା ଭଣ୍ୟତେ କେନ ତେଷାଂ
ତପଶ୍ଚର୍ଯ୍ୟସ୍ୟାଗ୍ରେପହାସଂ କଥଂ ସ୍ୟାତ୍ । ୩ ।

ମଙ୍ଗଳ ତୃତୀୟ ଭବରେ ଥିଲେ ମନୁଷ୍ୟ ବାହୁବଳୀ ଓ ତେଜସ୍ୱୀ ହୁଅଇ, ନିଜ ବାହୁବଳରେ ଧନ ଉପାର୍ଜନ, କରେ, ତାହାର ଯେ ଭାଇମାନେ ସେଗୀ ନ ହେବେ ଏହା କେ କହିପାରେ, ସେ ଯେ ଧର୍ମାଦି କାର୍ଯ୍ୟ କରେ ତାହା ପ୍ରକୃତ ନ କରି ବିପରୀତେ କରିବାରୁ ତାହାଙ୍କୁ ଲୋକମାନେ ଉପହାସ କରନ୍ତି । ୩ ।

ଯଦା ଭୂସୁତଃ ସଭବେଭ୍ରୂର୍ଯ୍ୟଭବେ ତଦାକଂଗ୍ରହାଃ ସାନୁକୂଲାଜନାନାଂ
ସୁହୃଦ୍‌ବର୍ଗସୌଖ୍ୟଂ ନ କିଂଚିଦ୍ଧି ଚିନ୍ତ୍ୟଂକୃପାବସ୍ଥଭୂମିଲଭେଭ୍ରମିପାଳାତ୍

ମଙ୍ଗଳ ଚତୁର୍ଥ ଭବରେ ଥିଲେ ମନୁଷ୍ୟର ଏପରି ମନ୍ଦଫଳ ହୁଅଇ ଯେ ଅନ୍ୟ ଗ୍ରହମାନେ ଶୁଭଦାତା ହୋଇଥିଲେ ମଧ୍ୟ ଶୁଭଫଳ ଦେବାର ଅସମର୍ଥ ହୁଅନ୍ତି, ସେ ବନ୍ଧୁବର୍ଗ, ମାତୃ ଓ ମିତ୍ରଜନରେ ସୁଖୀ ହୁଅଇ ନାହିଁ ତଥାଚ ରାଜକୃପାରୁ ବସ୍ତ୍ର ଭୂମି ଆଦି ଲାଭ କରିଥାଏ । ୪ ।

କୁଜେ ପଞ୍ଚମେ ଜାଠରାଗ୍ନି ବଳୀୟାନ୍କଜାତଂ ନୃଜାତଂ ନହିନ୍ତ୍ୟେକ ଏବ ।
ତଦାଗମନଲ୍ପାସତଙ୍କଲ୍ମିଷେପି ସ୍ୱୟଂ ଦୁର୍ଧବଭ୍ରପ୍ୟତେନ୍ତଃ ସଦେବ ।୫।

ମଙ୍ଗଳ ପଞ୍ଚମ ଭବରେ ଥିଲେ ମନୁଷ୍ୟର ଜଠରାଗ୍ନି ବଳିଷ୍ଠ ହେବାରୁ ବିଶେଷ ଦ୍ରବ୍ୟମାନ ଭକ୍ଷଣ କରି ପାକ କରେ, ତାହାର ଯେତେ ପୁତ୍ର ହୁଅନ୍ତି ସେମାନେ ପ୍ରାୟ ନାଶହୁଅନ୍ତି, ସେ ସର୍ବଦା କଲ୍ମିଷମନା ହୁଏ, ପାପକାର୍ଯ୍ୟାଦିରେ ମତ୍ତ ହୋଇ ପାପକାର୍ଯ୍ୟାଦି କରୁଥାଏ ,ତତ୍ପ ଦୁର୍ଧପରି ତାହାର ହୃଦୟ ସର୍ବଦା ସନ୍ତପ୍ତ ହୋଇ ରହିଥାଏ । ୫ ।

ନ ତିଷ୍ଠନ୍ତି ଷଷ୍ଠେରିଭୋଗାଗାରକେବେ ତଦଙ୍ଗୈରତାଃସଙ୍ଗରେ ଶକ୍ତିମନ୍ତଃ ।
ମନୀଷାସୁଖୀମାତୁଳେୟୋନିତଦ୍ଦ୍ଧିର୍ଲୀୟତେ ବିତ୍ତଂ ଲଭେତାପିଭୂର । ୬ ।

ମଙ୍ଗଳ ଷଷ୍ଠ ଭାବରେ ଥିଲେ ମନୁଷ୍ୟର ଯେ ଶତ୍ରୁ ସେ ତାହାର ସମ୍ମୁଖରେ ରହି କହି ନ ପାରେ ସେ ରାଜକାର୍ଯ୍ୟ ନିଯୁକ୍ତ ( ମନ୍ତ୍ରୀଆଦି)କାର୍ଯ୍ୟ କରେ,ତାହାର ବୁଦ୍ଧି ବିଶେଷ ଓ ଚତୁରତା ହୁଅଇ, ମାତୁଳ ବା ମାତୁଳ ପୁତ୍ରମାନେ ସୁଖରେ ସ୍ଥିତ ହୋଇଥାନ୍ତି ଅକସ୍ମାତ୍ ବିଶେଷ ପରିମାଣରେ ଧନହାନି ହୁଅଇ ଏବଂ ସେ ଧନବାନ୍ ହୋଇଥାଏ । ୬ ।

ଅନୁଷ୍କାରଭୂତେନ ପାଣିଗ୍ରହଣ-ପ୍ରୟାଣେ ନ ବାଣିଜ୍ୟତୋ ନୋନ୍ନିବୃତ୍ତିଃ ।
ମୁହୁର୍ଭଙ୍ଗଦଃ ସ୍ତ୍ରୀଣାଂମେଦିନୀଜଃ ପ୍ରହାରୈର୍ଦିନୈଃ ସପ୍ତମେ ଦମ୍ପତିଘ୍ନଃ ॥

ମଙ୍ଗଳ ସପ୍ତମ ଭାବରେ ଥିଲେ ମନୁଷ୍ୟ ବାଣିଜ୍ୟ କର ତହିଁରେ ନିବୃତ୍ତି ହୁଅଇ ନାହିଁ, ସେ ଧନଲାଭ ଓ ସ୍ତ୍ରୀଲାଭ ଆଶାରେ ବିଶେଷ ଦିନ ବିଦେଶ ଭୋଗୀ ହୋଇଥାଏ । ବିବାହ ନିମନ୍ତେ ଅନେକ ସ୍ଥାନରେ ସମ୍ବନ୍ଧ ହେବାର ଘଟା ହୋଇ ଭଗ୍ନ ହୋଇଯାଏ, ପରେ ଯେ ସ୍ତ୍ରୀକୁ ବିବାହ ହୁଅଇ ସେ ସ୍ତ୍ରୀ କଳହା ଓ ଦୁଷ୍ଟଭାଷୀ ହୁଅଇ, ସମୟେ ତାହାର ସ୍ତ୍ରୀହାନି ହୁଏ ଏବଂ ସ୍ତ୍ରୀ ଜାତକେ ମଙ୍ଗଳ ସପ୍ତମସ୍ଥ ହୋଇଥିଲେ ତାହାର ପୁରୁଷ ହାନି ହୁଅଇ, ପୁରୁଷ ଯୁଦ୍ଧ ବିବାଦରେ ଭଙ୍ଗ ଶତ୍ରୁଦ୍ୱାରା ଅପମାନିତ ବାରମ୍ବାର ହେଉଥାଏ । ୭ ।

ଶୁଭସ୍ତସ୍ୟ କିଂ ଖେଚରୈଃ କୁର୍ଯ୍ୟୁରନ୍ୟେ ।
ବିଧାନେଽପିଚେଦଷ୍ଟମେ ଭୂମିସୂନୁଃ ॥
ସଖା! କିଂ ନ ଶତ୍ରୁୟତେ ସଜ୍ଜତୋଽପି ।
ପ୍ରୟତ୍ନେକୃତେ ଭୂୟତେ ରୋଗପସର୍ଗୈଃ । ୮ ।

ଜାତକରେ ମଙ୍ଗଳ ଅଷ୍ଟମ ଭାବରେ ଥିଲେ ମନୁଷ୍ୟର ଅନ୍ୟ ଗ୍ରହମାନଙ୍କର ଶୁଭଫଳ ହ୍ରାସ ହୋଇଥାଏ, ମଙ୍ଗଳ ଥିବାର ଯେ ଅନିଷ୍ଟ ଫଳ ସେ ସମସ୍ତ ଫଳ ଭୋଗ ହୁଏ । ଯଥା;—ମିତ୍ରଜନରେ ଶତ୍ରୁଭାବ ଯେ କିଛି କାର୍ଯ୍ୟ ଯତ୍ନକାରୀ ତହିଁରେ ବିଘ୍ନତା ଓ ସ୍ତ୍ରୀହାନି ହୁଅଇ । ୮ ।

ମହୋଗ୍ରାମତ ର୍ଭ୍ୟବନ୍ତଂ ମହୋଗ୍ରଂ ।
ତପୋଭାବଗୋ ମଙ୍ଗଳସ୍ତଂ କରୋତି ॥
ଭବେନ୍ମାଦମଃ ଶ୍ୟାଳକଃ ସୋଦରୋ ବା
ଭୃତୋ ବଳମ ପୁଷ୍କଳଭୋ ବପାକେ । ୯ ।

ମଙ୍ଗଳ ନବମ ଭାବରେ ଥିଲେ ମନୁଷ୍ୟ ଭାଗ୍ୟବାନ୍ ତେଜବାନ୍, ଧନବାନ୍ ଓ କ୍ରୂରବୁଦ୍ଧି ହୁଅଇ । ତାହାର ଜ୍ୟେଷ୍ଠଭାଇ ଓ ଶାଳକ (ଶଳା) ଏମାନେ ପ୍ରାୟ ଜୀବତ ହୁଅନ୍ତି ନାହିଁ । ସେ କର୍ମଦୋଷେ ସମୟେ ଭାଗ୍ୟହୀନ ହୋଇଥାଏ, ଅନର୍ଥକ କାର୍ଯ୍ୟରେ ବହୁତ ଶ୍ରମକରି ପ୍ରାକର୍ମହୀନ ହୁଅଇ । ୯ ।

ଭୂଲେ ତସ୍ୟ କଂ ମଙ୍ଗଳୋ ମଙ୍ଗଳୋନୋ ।
ଜନୈର୍ଭୂଯ୍ୟତେ ମଧ୍ୟଭାବେ ଯଦସ୍ୟାହୁ ॥
ସ୍ୱତଃସି ଦ୍ଧ୍ୟୈବାବତଂସୀଯ୍ୟତେଽସୌ
ବସ୍ୱଳୋଽପି କଣ୍ଠୀରବଃ କଂ ଦ୍ୱିତୀୟଃ । ୧୦ ।

ମଙ୍ଗଳ ଦଶମ ଭାବରେ ଥିଲେ ମନୁଷ୍ୟର ବିଶେଷ ଶୁଭଫଳ ହୋଇଥାଏ । ସେ ଭୃତ୍ୟ ସେବକାଦି ବେଷ୍ଟିତ ହୋଇ ସୁଖଭୋଗ କରେ ଓ ସକଳ କାର୍ଯ୍ୟରେ ଜୟଲାଭ କରୁଥାଏ, କୁଳାନୁସାରେ ଗୁଣବାନ୍‌ହୋଇ ଖ୍ୟାତିବନ୍ତ ହୁଏ । ତାହାର ଫିହର ପ୍ରାୟ ପ୍ରାକର୍ମ ହୁଅଇ, ଏକଫିହକୁ ପରାସ୍ତ କରଇ ସେ ଶତ୍ରୁକୁ ଦେଖି ସେହିଭାବେ ପରାସ୍ତ କରେ । ନୀଚକୁଳେ ଜନ୍ମ ହୋଇଥିଲେ ମଧ୍ୟ ଏହିଫଳ ଘଟିଥାଏ । ୧୦ ।

କୁଜଃ ପୀଡ଼ୟେତ୍ଲାଭଗୋଽପତ୍ୟ ଶତ୍ରୂନ୍
ଭବେଦ୍ୱଂମୁଖୋଦୁର୍ମୁଖୋଽପି ପ୍ରତାପାତ୍ ।
ଧନଂ ବର୍ଦ୍ଧତେ ଗୋଧନୈର୍ବାହନୈର୍ବା
ସକୁଞ୍ଚତ୍ୟତାର୍ଥେ ଚ ପୈଶୁନ୍ୟଭାବାତ୍ । ୧୧ ।

ମଙ୍ଗଳ ଏକାଦଶ ଭାବରେ ଥିଲେ ମନୁଷ୍ୟର ସୁତ ଓ ଶତ୍ରୁ ଏମାନେ କ୍ଳେଶୀ ହୁଅନ୍ତି । ତାହାର ଯେ ଶତ୍ରୁମାନେ ଯେ ସମ୍ମୁଖରେ ଦେଖିଲେ

ମନରେ ଭସ୍ମ କର କୋମଳ କଥା ପ୍ରକାଶ କରନ୍ତି । ଗୋରୁ ବା ଘୋଡ଼ାଦି ଯାନ ବାହାନ ବ୍ୟାପାରରେ ବା ଠକାଇବା ବ୍ୟବସାୟରେ ବା ଚୌରବୃତ୍ତି ଅବଲମ୍ବନେ ଧନଲାଭ କରେ, ସେ ଦୁଷ୍ଟଭାଷୀ ଓ ପ୍ରତାପବାନ୍ ହୁଅଇ । ୧୧ ।

ଶତାଷୋଽପିବହ୍ନିଷତୋ ଚୌରହୃଘାତୈଃ
କୁଜୋଦ୍ୱାଦଶୋଽର୍ଥସ୍ୟ ନାଶଂ କରୋତି ।
ମୃଷା କିଂ ବଦନ୍ତି ଭସ୍ମଂ ଦସ୍ୟୁତୋବା
କଳିଂ ପାରର୍ଥୀହେତୁ ଦୁଃଖଂ କରନ୍ତ୍ୟଂ । ୧୨ ।

ମଙ୍ଗଳ ଦ୍ୱାଦଶରେ ଥିଲେ ମନୁଷ୍ୟ ଶରୀରେ ଅସ୍ତ୍ରାଦି ଦ୍ୱାରା କ୍ଷତଚିହ୍ନ ଧାରଣ କରିଥାଏ, ସେ ବୃଥା କାର୍ଯ୍ୟରେ ଅର୍ଥହାନି କରୁଥାଏ ଓ କ୍ଷବ୍ଧ ହନ୍ତା ହୁଅଇ । ସମୟେ ଚୌର ବା ପଶୁ ବା ସର୍ପଦ୍ୱାରା ଭୟଭୋଗୀ ହୁଅଇ । ଭୃତ୍ୟ ହେତୁ କଳହ ଓ ସେହି ନିମନ୍ତେ ଚିନ୍ତିତ ହୋଇ ଦୁଃଖଭୋଗୀ ହୁଅଇ । ୧୨ ।



## ବୁଧଭାବ ଫଳଂ ।

ବୁଧୋମୂର୍ତ୍ତି ଗୋମାର୍ଜୟେଦନ୍ୟରିଷ୍ଟଂ
ବରିଷ୍ଠାଧିୟୋବୈଖରୀ ବୃତ୍ତିଭାଜଃ ।
ଜନାଢ୍ୟବ୍ୟଗ୍ରୁମୀକରୀ ଭୂତଦେହା
ଶ୍ଚିକିତ୍ସାବିଦୋଦୁଷ୍ଟକ୍ରିୟା ଭବନ୍ତି । ୧ ।

ଜନ୍ମ ଲଗ୍ନରେ ବୁଧ ଥିଲେ ମନୁଷ୍ୟ ଜାତକେ ଅନ୍ୟାନ୍ୟ ଗ୍ରହମାନଙ୍କର ରିଷ୍ଟ ଥିଲେ ତାହା ଭଙ୍ଗ ହୁଅଇ, ସେ ଶ୍ରେଷ୍ଠବୁଦ୍ଧିମାନ୍ ହୋଇ ( ବୈଖରବୃତ୍ତିଭାଗୀ ) ମରୀଚୀକା ( ମୋହରରଅଦ ) କାର୍ଯ୍ୟ ଦ୍ୱାରା ଅର୍ଥଲାଭ କରେ । ତାହାର ଶରୀର ସୁବର୍ଣ୍ଣାକୃତି ସୁନ୍ଦର ହୁଅଇ । ସେ ସର୍ବଜନସହ ମିତ୍ରତା ହୋଇଥାଏ । ବୈଦ୍ୟ ବିଦ୍ୟାରେ ନିପୁଣଖ୍ୟାତବନ୍ତ ହୁଅଇ । ତଥାପି ରୋଗିଙ୍କୁ ଚିକିତ୍ସା କରିବା ସମ୍ବନ୍ଧେ ଅନୁପଯୋଗୀ ହେତୁ ନିନ୍ଦନୀୟ ହେଉଥାଏ । ୧ ।

ଧନେ ବୁଦ୍ଧିମାନ୍ ବୋଧନେ ବାହୁତେଜାଃ
ସଦ୍‌ଭୂସଙ୍ଗତୋ ଭାଷତେ ବ୍ୟାସ ଏବ ।
ପୃଥୂଦାରତା କଳ୍ପବୃକ୍ଷସ୍ୟତଦ୍ୱ
ଦ୍ଦୂଚ୍ଛୈ ର୍ଭିଣ୍ୟତେ ଭୋଗତଃ ଷଟ୍‌ପଦୋଽସ୍ୟଂ । ୨ ।

ବୁଧ ଧନ ଭାବରେ ଥିଲେ ମନୁଷ୍ୟ ବୁଦ୍ଧିମାନ୍ ପ୍ରାକର୍ମଶାଳୀ ( ବଳବାନ୍ ) ( ବାହୁବଳୀ ) ହୁଅଇ ଓ ସେ ପଣ୍ଡିତ ସଦ୍ୟାରେ ନିପୁଣ ସଦ୍ଭାକ୍ୟ ବ୍ୟାସଙ୍କପରି ବକ୍ତା ହୁଏ । ଉଦାର ଚିତ୍ତ ଦାତବ୍ୟରେ କଳ୍ପ-ବୃକ୍ଷ ସମାନ ସର୍ବ ଭୋଗରେ ଭୋଗବାନ୍ ତଥାଚ ଭ୍ରମରପ୍ରାୟ ବାସନା-ଭୋଗୀ ହୋଇଥାଏ । ୨ ।

ବଣିଙ୍ ମିତ୍ରତାପଣ୍ୟକୃଦ୍‌ବୃତ୍ତିଶୀଳୋ
ବଣିଭ୍ଭଂଧ୍ୱୟୋ ଦୁର୍ବଶାନା ମୁପୈତ ।
ବିନୀତୋଽତିଭୋଗଂ ଭବେଦ୍ରନ୍ୟସେଵା
ତୃତୀୟେଽନୁଜୈସଂଶ୍ରିତୋ ଜ୍ଞେ ଲତାବାନ୍ । ୩ ।

ବୁଧ ତୃତୀୟଭାବରେ ଥିଲେ ମନୁଷ୍ୟ ବେପାରିସହ ମିତ୍ରତା ଓ ନିଜେ ବାଣିଜ୍ୟକାରୀ ହୁଅଇ । ତାହାର ନମ୍ରସ୍ୱଭାବ ଓ ସୁଶୀଳତା ଗୁଣରେ ଯେ ଲୋକ କାହାର ବଶୀଭୂତ ନୁହେ ସେହି ଲୋକର ବଶୀଭୂତ ବା ତାହାକୁ ବଶକରି ପାରଇ । ଉତ୍ତମଭୋଗ ଭୋଗ କରେ, ଭ୍ରାତୃବାନ୍ ହୁଏ, ଭ୍ରାତୃ-ସହ ଉତ୍ତମ ଭାବେ ଦିନ ଯାପନ କରି ବୃଦ୍ଧ ସମୟକୁ ଗୃହତ୍ୟାଗୀ ହୋଇ ଈଶ୍ୱର ସେବାରେ ନିଯୁକ୍ତ ( ବୈଷ୍ଣବ ) ହୁଅଇ । ୩ ।

ଚତୁର୍ଥେ ଚରେଚ୍ଛନ୍ଦଜଷ୍ଟାରୁ ମିତ୍ରୋ-
ବଶେଷାଧିକୃଦ୍‌ଭୂମିନାଥାଙ୍ଗଣସ୍ୟ ।
ଭବେଲ୍ଲେଖକୋ ଲକ୍ଷ୍ୟତେ ବାତଭୁକ୍ତଂ-
ତଦାଶାପରୈଃ ପୈତୃକଂ ନୋ ଧନଂ ଚ । ୪ ।

ବୁଧ ଚତୁର୍ଥ ଭାବରେ ଥିଲେ-ମନୁଷ୍ୟ ଉତ୍ତମଲୋକସହ ମିତ୍ରତା ହୁଅଇ ସେ ରାଜଦ୍ୱାରେ ଏପରି ଅଧିକାର ପ୍ରାପ୍ତ ହୁଏ ଯେ ତାହାର ହୁକୁମ ( ଲେଖାଦ୍ୱାରା ) ଅନ୍ୟଲୋକମାନେ ରାଜ୍ୟ ଶାସନ କରୁଥାନ୍ତି ।

୨ ଚମତ୍କାରଚିନ୍ତାମଣି

ଏବଂ ସେ ନିଜେ ପିତୃ ଧନଦ୍ୱାରା ସୁଖୀ ହୁଅଇ ନାହିଁ, ସ୍ୱ ଉପାର୍ଜନରେ ଚିରକାଳ ସୁଖଭୋଗ କରେ । ୪ ।

ବନ୍ଧୁସ୍ୟାଦ୍ଦମେପୁତ୍ରଗର୍ଭୋନତଷ୍ଟେ-
ଭବେତ୍ତସ୍ୟ ମେଧାର୍ଥ ସମ୍ପାଦସ୍ତିର୍ଣୀ ।
ବୁଧୈର୍ଭିଣ୍ୟତେ ପଞ୍ଚମେ ରୌହିଣୀସ୍ତୈ-
ଶ୍ଚମୃଦ୍ଧି ଦ୍ୟତେ କୈତବସ୍ୟାଛିଦ୍ରସ୍ତି । ୫ ।

ବୁଧ ପଞ୍ଚମଭାବରେ ଥିଲେ ମନୁଷ୍ୟର-ବ ୩୦।୪୦ ବର୍ଷ ଗତେ ପୁତ୍ର-ଲାଭ ଓ ପୁତ୍ରବାନ୍ ହୁଏ । ଉତ୍ତମ ବୁଦ୍ଧିମାନ୍ ( ମେଧାଶକ୍ତି ) ହୁଅଇ । ଧନ ଉପାର୍ଜନ ଯାହା କରେ ତାହା କୈତବ ( କପଟ ) ଛିଦ୍ର ବୁଦ୍ଧିଦ୍ୱାରା କରୁଥାଏ ତଥା ଚ-ସେ-ପଣ୍ଡିତ ମଧ୍ୟେ ଗଣନା ହୁଅଇ । ୫ ।

ବିରୋଧୋ ଜନାନାଂ ବିରୋଧୋ ରିପୂଣାଂ
ପ୍ରବୋଧୋଯତ୍ନାନାଂ ଚ ରୋଧୋଽନିଳାନାଂ ।
ବୁଧେ ସଦ୍ବ୍ୟୟେ ବ୍ୟବହାରେ ନିର୍ଧୀନାଂ
ବଳାଦର୍ଥ କୁଷ୍ଟଂଭବେଛତ୍ରୁ ଲୁବେ । ୬ ।

ବୁଧ ଷଷ୍ଠ ଭାବରେ ଥିଲେ ମନୁଷ୍ୟ ବହୁତ ଲୋକ ସହ ବିବାଦ କରେ ଓ ମଧ୍ୟ ନିଜଗୃହେ ଶତ୍ରୁତା ହେଉ ଥାଏ ଏବଂ ଶତ୍ରୁକୁ ନିବାରଣ କରେ, ତାହାର ବାୟୁବେଗ ପ୍ରବଳ ହେତୁ ( କୋଷ୍ଠବଦ୍ଧ ) ଗୁଦପୀଡ଼ା ହୁଅଇ, ସେ ସଦ୍ବ୍ୟୟୀ ହୁଏ । ମଣିମୁକ୍ତାଦି ଅମୂଲ୍ୟ ପଦାର୍ଥମାନ ବ୍ୟବହାର କରେ, ନିଜ ପ୍ରାକର୍ମ ଦ୍ୱାରା ଧନ ଉପାର୍ଜନ କରି ସୁଖୀ ହୁଅଇ । ୬ ।

ସୁତଃ ଶୀତଗୋଃ ସପ୍ତମେ ସଂସ୍ଥିତସ୍ୟ
ବିଧତ୍ତେ ତଥା ଭୁଚ୍ଛବାର୍ଯ୍ୟଂ ଚ ଭୋଗେ ।
ଅନସ୍ତଂ ଗତୋହେମବନ୍ଧେହଶୋଭଂ
ନ ଶକ୍ନୋତି ତସ୍ୟାଂଖଦୋବାନୁ କର୍ତ୍ତୁଂ । ୭ ।

ବୁଧ ସପ୍ତମ ଭାବରେ ଥିଲେ ମନୁଷ୍ୟ ଉତ୍ତମା ସ୍ତ୍ରୀମାନ ଭୋଗକରେ, ରତିଶାସ୍ତ୍ରରେ ଚତୁରତା ହେତୁ ସ୍ତ୍ରୀମାନଙ୍କ ମନ ସନ୍ତୋଷ କରିଥାଏ । ତାହାର ଶରୀର ସୁବର୍ଣ୍ଣାକୃତ ଶୋଭିକାନ୍ତ ହୁଅଇ, ବନ୍ଧୁ ସମ୍ପଦ ଲୋକ

କରେ, ସ୍ବଜନ ମଧ୍ୟେ କର୍ତ୍ତା ହୋଇ ଥାଏ । ବୁଧ ସହିତ ରବିଯୁକ୍ତ ଥିଲେ ଏହି ଫଳମାନ ବିପରୀତ ହୁଅଇ । ୭ ।

ଶତଂ ଜୀବନୋରନ୍ଧ୍ରଗେ ରାଜପୂଜ୍ୟେ
ଭବନ୍ତୀହ ଦେଶାନ୍ତରେ ବିଶ୍ରୁତାସ୍ତେ ।
ନିଧାନଂ ନୃପାଦାବକସ୍ମାଦ୍ବା ଲଭନ୍ତେ
ଯୁବସ୍ତ୍ରୀଭବଂ କ୍ରୀଡ଼ନଂ ପ୍ରୀତିମନ୍ତଃ । ୮ ।

ବୁଧ ଅଷ୍ଟମ ଭାବରେ ଥିଲେ ମନୁଷ୍ୟ ଶତାୟୁ ( ଦୀର୍ଘଜୀବୀ ) ହୁଅଇ ଦେଶ ଓ ବିଦେଶରେ ତାହାର ନାମ ଖ୍ୟାତ ହୋଇଥାଏ, ସେ ରାଜା ସହିତ ବ୍ୟବହାରରୁ ବା ବାଣିଜ୍ୟ କରି ଅର୍ଥ ଲାଭ କରେ ! ସ୍ତ୍ରୀ ଭୋଗ ବିଶେଷ କ୍ରୀଡ଼ା କୌତୁକରେ କାଳଯାପନ କରୁଥାଇ । ୮ ।

ବୁଧେ ଧର୍ମଗେ ଧର୍ମଶୀଲୋଽତିଧୀମାନ୍
ଭବେଦ୍ଦୀକ୍ଷିତଃ ସ୍ବର୍ଦ୍ଧୁନୀସ୍ନାତକୋ ବା ।
କୁଳୋଦ୍ୟୋତକୃଦ୍ଭାନୁବଦ୍ ଭୂମିପାଳା-
ପ୍ରତାପାଧିକୋ ବାଧକୋ ଦୁର୍ମୁଖାନାଂ । ୯ ।

ବୁଧ ନବମ ଭାବରେ ଥିଲେ ମନୁଷ୍ୟ ଅତି ଧାର୍ମିକ ଓ ଶୀଳତା ଏବଂ ବୁଦ୍ଧିମାନ୍ ହୁଅଇ । ( ଦୀକ୍ଷିତ ) ଉତ୍ତମ ଗୁରୁଠାରୁ ଦୀକ୍ଷା ଗ୍ରହଣ କରି ଯଜ୍ଞାନୁଷ୍ଠାନ କରେ ଓ ଉପାସକ ହୁଏ । ନିଜ ବଂଶରେ ସୂର୍ଯ୍ୟ ସମାନ ତେଜୋବନ୍ତ ହୋଇ ନାମ ପ୍ରକାଶ କରେ ସେ ରାଜ ଅଜ୍ଞାରେ ପ୍ରତାପବାନ୍ ହୋଇ ଦୁର୍ଜନ ଜନମାନଙ୍କର ଦର୍ପ ଦଳନ କରଇ । ୯ ।

ମିତଃ ଫବଦେଲ୍ଲୋମିତଂ ଫଲଭେତ
ପ୍ରସାଦାଦ୍ଧବୈକାର ସୌରାଜବୃତ୍ତିଃ ।
ବୁଧେ କର୍ମଗେ ପୂଜନୀୟୋ ବିଶେଷା
ପିତୁଃ ସମ୍ପଦୋ ନୀତିଦଣ୍ଡାଧିକାରାତ୍ । ୧୦ ।

ବୁଧ ଦଶମଭାବରେ ଥିଲେ ମନୁଷ୍ୟ ପୈତୃକ ସମ୍ପତ୍ତିଦ୍ୱାରା ସୁଖୀ ଓ ଭୋଗବାନ୍ ହୁଅଇ ସେ ରାଜନୀତି ବିଦ୍ୟାରେ ପରିପୂର୍ଣ୍ଣ ଓ ରାଜ କର୍ମଗ୍ରସ୍ତ ହୋଇ ଦଣ୍ଡଦାତା ଓ ମଣ୍ଡନକର୍ତ୍ତା ହୋଇଥାଏ । ତାହାର ବୁଦ୍ଧି ସମସ୍ତେ

ସମସ୍ତେ ବାଗ୍ନୁଳମତ (କଥା ଅଧିର) କହୁଥାଏ ଓ ହୁଏ । ହସ୍ତି ଘୋଡ଼ା ବାହନ ଓ ଯାନଭୋଗୀ ହୁଅଇ । ୧୦ ।

ବିନାଲ୍ପଭଞ୍ଜକସ୍ଥିତଂଭେଷଜାତଂ
ନ ଲଭେନଲ୍ପବର୍ଣ୍ୟମାନୂଣ୍ୟମସ୍ତି ।
କୁତଃ କନ୍ୟକୋଦ୍ୱାହଦାନଂ ଚ ଦେୟଂ
କଥଂ ଭୂସୁରସ୍ତ୍ୟକ୍ତତୁଷ୍ଟା ଭବନ୍ତି । ୧୧ ।

ବୁଧ ଏକାଦଶ ଭବରେ ନ ଥିଲେ ମନୁଷ୍ୟର ଶରୀର ସୁନ୍ଦର ଓ ଋଣରହିତ କପରି ହେବ କନ୍ୟାଦାନାଦି ସତ୍କାର୍ଯ୍ୟେ ଅର୍ଥ ବ୍ୟୟ କେପରି କରି ପାରିବ ଦେବ ବ୍ରାହ୍ମଣାଦି ସାଧୁଜନଙ୍କ ପୂଜା କିଏ କରିବ ଦରିଦ୍ର ଭିକ୍ଷୁ ଅତିଥି ଜନମାନଙ୍କ ତୃଷ୍ଣା ପୂର୍ଣ୍ଣକରି ଧନ ପ୍ରଦାନ କିଏ ସେ ଦେବ । ଏକାଦଶରେ ବୁଧଥିଲେ ଏହି ଉପରୋକ୍ତ ଫଳଗୁଡିକ ପୂର୍ଣ୍ଣ-ଭାବେ ହୋଇଥାଏ । ୧୧ ।

ନଚେଦ୍ଦ୍ୱାଦଶେଯସ୍ୟସୀତାଂଶୁ ଜାତଃ
କଥଂ ତଦ୍ଗୃହଂ ଭୂମିଦେବା ଭଜନ୍ତି ।
ରଣେବୈରିଣୋ ଭୀତିମାପ୍ନୋତିକସ୍ମା-
ଦ୍ଧିରଣ୍ୟାଦିକୋଷଂ ଶଠଃ କୋନୁ ଭୁଙ୍କ୍ତେ । ୧୨ ।

ମନୁଷ୍ୟର ବୁଧ ଦ୍ୱାଦଶ ଭବରେ ଥିଲେ ସେ ମନୁଷ୍ୟର ଗୃହକୁ ସମ୍ମାନ ଓ ଅର୍ଥ ଲଭିବେ ଅଶାକରି ଅନେକ ବେଦାଧ୍ୟାୟି ବ୍ରାହ୍ମଣମାନେ ଗମନ କରନ୍ତି, ସେ ତାହାଙ୍କର ଆଶା ପରିପୂର୍ଣ୍ଣ କରେ । ଯୁଦ୍ଧରେ ବା ବୈରିସମ୍ମୁଖରେ ପତିତହୋଇ କ୍ଳେଶ ଭୋଗକରି ପୁନଃ ଜୟ ଲଭ-କରେ, ସେ ସୁବର୍ଣ୍ଣାଦି ବ୍ୟବସାୟରୁ ଧନବାନ୍ ହୋଇ ଖ୍ୟାତବନ୍ତ ହୁଅଇ । ୧୨ ।



## ବୃହସ୍ପତିଭାବ ଫଳଂ ।

ସ୍ୱରୁଭଂଗୁଣୈର୍ଲଗ୍ନଗେଦେବପୂଜ୍ୟେ
ସୁବେଶୀସୁଖୀଦିବ୍ୟଦେହୋଽଲ୍ପବାର୍ଯ୍ୟଃ ।

ଗତଭିର୍ବିଜୀ ପାରଲୌକିକବିଚିନ୍ତ୍ୟା
ବସୂନିବ୍ୟୟୈଃ ସଂବଲନେନ ବ୍ରଜନ୍ତି । ୧ ।

ଅର୍ଥ—ବୃହସ୍ପତି ଜନ୍ମ ଲଗ୍ନରେ ଥିଲେ ମନୁଷ୍ୟ ବିଦ୍ୟାବାନ୍ ହୁଅଇ ସେ ଗନ୍ଧ ପୁଷ୍ପାଦିରେ ପ୍ରିୟ ଓ ମଣ୍ଡିତ ହୋଇଥାଏ । ସକଳ ବିଷୟରେ ସୁଖଭୋଗ କରେ ତାହାର ଶରୀର ସୁନ୍ଦର ଓ ଅଳ୍ପ ବଳ ହୁଏ, ଲୋକ-ମାନଙ୍କର ପ୍ରସନ୍ନତା ହେତୁ ଉତ୍ତମ ଅଧିକାର ପ୍ରାପ୍ତ ହୁଏ, ଧାର୍ମିକ ହୋଇ ସତ୍କାର୍ଯ୍ୟରେ ଅର୍ଥ ବ୍ୟୟକରେ ଦେହାନ୍ତେ ଉତ୍ତମଗତି ପ୍ରାପ୍ତହୋଇ ସ୍ୱର୍ଗଭୋଗ କରଥାଏ । ୧ ।

କବିତ୍ୱେମତିର୍ଦଣ୍ଡନେ ତୁଚ୍ଛଶକ୍ତି
ର୍ମୁଖେଦୋଷଦୃକ୍ ଶୀଘ୍ର ଭୋଗାର୍ତ୍ତ୍ୟୈବ ।
କୁଟୁମ୍ବୈଗୁରୌ କଷ୍ଟତୋ ଦ୍ରବ୍ୟଲବ୍ଧିଃ
ସଦାନୋଧନଂ ବିଭ୍ରମେଦ୍ବହୁତୋଽପି । ୨ ।

ବୃହସ୍ପତି ଧନ ଭାବରେ ଥିଲେ ମନୁଷ୍ୟର ପଦ୍ୟ ରଚନା ଶକ୍ତି ଓ କବିତା ପ୍ରକାଶ ହୁଏ, ସେ ରାଜକାର୍ଯ୍ୟ ନିଯୁକ୍ତେ ଦଣ୍ଡିବା କ୍ଷମତା ହୋଇ-ପାରେ । ତାହାର ମୁଖ ରୋଗ ସମୟେ ସମୟେ ହୋଇଥାଏ, କ୍ଷୁଧାର୍ତ୍ତୀ ହୁଅଇ ଶୀଘ୍ର ଭୋଜନକରେ । ବହୁକଷ୍ଟେ ଧନ ଉପାର୍ଜନ କରଇ କଲେ ମଧ୍ୟ ସର୍ବଦା ଧନଯୁକ୍ତ ହୁଅଇ ନାହିଁ । ୨ ।

ଭବେଦ୍ବସ୍ୟବୃଶ୍ଚିକ୍ୟ ଗୋଦେବମନ୍ତ୍ରୀ
ଲଘୂନାଂ ଲଘୀୟାନ୍ ସୁଖଂ ସୋଦରାଣାଂ ।
କୃତଘ୍ନୋ ଭବେନ୍ନିର୍ଦୟାଢ୍ୟେ ନିମିତ୍ୟଂ
ଲଲାଟୋଦୟେଽପ୍ୟର୍ଥଲାଭେନ ତଦ୍ବତ୍ । ୩ ।

ବୃହସ୍ପତି ତୃତୀୟ ଭାବରେ ଥିଲେ ମନୁଷ୍ୟ ଅତି କ୍ଷୁଦ୍ର ଓ ଶୂଦ୍ରାଦି ନୀଚଜାତୀୟ ଲୋକମାନଙ୍କ ସଙ୍ଗେ ସଂସର୍ଗୀ ହୋଇଥାଏ, ସେ ଭ୍ରାତୃ ସୁଖରେ ସୁଖୀ ହୁଏ । କୃପଣତା ଶଠ ସ୍ୱଭାବ ହେତୁ ମିତ୍ର ସଙ୍ଗ ବିପଦ ଘଟେ । ସାମାନ୍ୟ ଭାଗ୍ୟୋଦୟ ହୋଇ କର୍ମ ଦୋଷରୁ ତାହାର ଲଭ୍ୟ ସକଳ ବ୍ୟର୍ଥ ହୋଇଯାଏ । ୩ ।

ଗୃହଦ୍ୱାରତଃଶ୍ରୂୟତେବାଜିହ୍ରେଷା
ଦ୍ୱିଜୋଚ୍ଚାରିତୋ ବେଦଘୋଷୋଽପତଦ୍ଧୃତ୍ରି ।
ପ୍ରତିସ୍ପର୍ଦ୍ଧିନଃକ୍ଳିଶ୍ୟତେ ପାରତର୍ଯ୍ୟଂ
ଚତୁର୍ଥେଗୁରୌ ତପ୍ତମନ୍ତର୍ଗତଂ ଚ । ୪ ।

ବୃହସ୍ପତି ଚତୁର୍ଥ ଭବରେ ଥିଲେ ଜାତପୁରୁଷ ଗୃହର ଦ୍ୱାରଦେଶେ ନିତ୍ୟ ଘୋଟକର ଝିଁହିଁଝିଁନା ଶବ୍ଦ ହୁଅଇ, ( କି ତାହାର ଘୋଡ଼ା ହାତୀ ଏମାନେ ଥାନ୍ତି ) ଓ ଅର୍ଥ ଲାଭ ନିମନ୍ତେ ବ୍ରାହ୍ମଣମାନେ ବେଦ ଉଚ୍ଚାରଣ କରି ଅଶୀର୍ବାଦ କରୁଥାନ୍ତି । ତାହାର ଯେ ଶତ୍ରୁ ସେମାନେ ବଳହୀନ ହୋଇ ଦାସତ୍ୱ ପ୍ରାପ୍ତ ହୋଇଥାନ୍ତି । ତଥାଚ ନିଜର ମନ ସର୍ବଦା ସନ୍ତପ୍ତ ହେଉଥାଏ । ୪ ।

କଳାଚେସମନ୍ତିର୍ବୁଦ୍ଧିଭେ ଦେବପୂଜ୍ୟେ
ଭବେଚ୍ଛଲ୍ଲକଃ କଲ୍ପକୋଲେଖକୋବା ।
ନିଦାନେସୁତେ ବିଦ୍ୟମାନେଽପିଭୂତିଃ
ଫଳୋପଦ୍ରବଃ ପକ୍ୱକାଳେ ଫଳସ୍ୟ । ୫ ।

ବୃହସ୍ପତି ପଞ୍ଚମ ଭବରେ ଥିଲେ ମନୁଷ୍ୟର ମତି ଭୋଗ ବିଳାସାଦିରେ ମଗ୍ନଥାଏ । ତାହାର କହିବାର କ୍ଷମତା ବିଶେଷ ହୁଅଇ, ସେ ନ୍ୟାୟ ଶାସ୍ତ୍ରାଦିରେ ବେତ୍ତାହୋଇ ତର୍କ ବିତର୍କ କରିପାରେ, ତାହାର ହସ୍ତାକ୍ଷର ଉତ୍ତମ ହୁଅଇ । ପରନ୍ତୁ ଯେ ଉଚ୍ଚ କାର୍ଯ୍ୟକରରେ ତହିଁରେ ପ୍ରାପ୍ତ ନିନ୍ଦିତା ଘଟେ । ବିଚକ୍ଷଣ ପୁତ୍ର ଜାତକରେ ସେ ପୁତ୍ର ଯୋଗୁ ସାମାନ୍ୟ ଧନୀ ହୋଇ ଶେଷକୁ ଦୁଃଖରେ କାଳାତିତ କରଇ । ୫ ।

ରିପୁଃର୍ଦ୍ଧୋଙ୍ଗଜନନ୍ୟାଂରୁଜଃ ସଂଭବେୟୁ
ରପୌବାକ୍ପତୌଶତ୍ରୁହନ୍ତାଭବେତ୍ତ ।
ବଳାଦୁଦ୍ଧତଃ କାରଣେ ତସ୍ୟଜେତା
ମହିଷ୍ୟାଦିଶର୍ମାନିତମ୍ୱାଭୂଜାନାଂ । ୬ ।

ବୃହସ୍ପତି ଷଷ୍ଠ ଭବରେ ଥିଲେ ମନୁଷ୍ୟର ମାତା ରୋଗଗ୍ରସ୍ତ ହୁଅଇ । ନିଜେ ରୋଗୀହୋଇ କ୍ଳେଶ ଭୋଗକରେ ତଥାଚ ଶତ୍ରୁମାନଙ୍କର ଦର୍ପ ନାଶକରିବାର ସମର୍ଥ ହୁଏ ସଂଗ୍ରାମରେ ନିଜ ପ୍ରାକ୍ରମ (ବଳିଷ୍ଠତା) ଦେଖାଇ

ଜସ୍ମୃଲାଭ କରେ । ତାହାର ଗୋ-ମହିଷି ଅଶ୍ୱ ପଶୁ ଜୀବ ବହୁତ ହୁଅନ୍ତି, ମାତୁଳ ବର୍ଗେ ବିରୋଧ ଜାତ ବା ମାତୁଳ ହାନି ହୋଇଥାଏ । ୬ ।

ମତିସ୍ତସ୍ୟବଲୀବିଲୁତିଶ୍ଚବଲୀରତି ର୍ବ୍ବେ ଭବେଦ୍ଭମିଣୀ ନାମବଳୀ ।
ଗୁରୁର୍ବ୍ବର୍ଗଲ୍ଲଦ୍ୟସ୍ୟଯାମିନୀଭବେ ସପିଣ୍ଡାଧିକୋ୧ଖଣ୍ଡକନ୍ଦର୍ପ ଏବ ।୭।

ବୃହସ୍ପତି ସପ୍ତମ ଭାବରେ ଥିଲେ ମନୁଷ୍ୟ ବିଶେଷ ବୁଦ୍ଧିମାନ୍ ବିଗ୍ରହ-ଶୀଳ ଓ ଚତୁର ଏବଂ ଧନବାନ୍ ହୁଅଇ ସେ ସ୍ତ୍ରୀ ଭୋଗ ଅଳ୍ପ ଭୋଗ କରିବାକୁ ଇଚ୍ଛାକରେ, ସର୍ବଦା ଗର୍ବ ଯୁକ୍ତ କଥା ପ୍ରକାଶ କରେ, ନିଜ ବଂଶରେ ବଳବାନ୍ ଖ୍ୟାତିବନ୍ତ କନ୍ଦର୍ପ ପ୍ରାପ୍ତ ହୁଅଇ ଏବଂ ସତ୍ୟକଥାରେ ରତହୋଇ ସତ୍ୟ କଥା ପ୍ରକାଶ କରୁଥାଏ । ୭ ।

ଚିରଂନୋବସେଦ୍ପୈତ୍ରକେଚୈବଗେହେ
ଚିରସ୍ଥାୟିନୀତଦ୍ଗୃହଂତସ୍ୟଦେହଂ ।
ଚିରଂନୋଭବେଦ୍ରସ୍ୟଣୀରୋଗମଙ୍ଗଂ
ଗୁରୁର୍ମୃତ୍ୟୁରୋଯସ୍ୟବୈକୁଣ୍ଠଗନ୍ତା । ୮ ।

ବୃହସ୍ପତି ଅଷ୍ଟମ ଭାବରେ ଥିଲେ ମନୁଷ୍ୟର ପିତୃ ସମ୍ପତ୍ତି ଭୋଗ ଅଳ୍ପ, ଓ ସେ ସମ୍ପତ୍ତି ଅଚିର ହୁଏ । ସେ ନିଜର ଉପାର୍ଜନ ଦ୍ୱାରା ଗୃହ କରି ସେହି ଗୃହକୁ ସମ୍ପୂର୍ଣ୍ଣଭାବେ ଭୋଗକରି ନ ପାରେ, ବାରଂବାର ତାହାର ଶରୀରରେ କ୍ଲେଶ ଜାତ ହେତୁ ରୋଗ ଭୋଗକରେ ଏବଂ ଧାର୍ମିକ ହୋଇ-ଥାଏ । ଗଙ୍ଗାଦି ତୀର୍ଥସ୍ଥାନେ ତାହାର ପ୍ରାଣତ୍ୟାଗ ହୁଅଇ ପରେ ବୈକୁଣ୍ଠ-ବାସୀ ହୋଇ ସ୍ୱର୍ଗ ସୁଖ ଭୋଗକରେ । ୮ ।

ଚତୁ ର୍ଭୂମିକଂ ତଦ୍‌ଗୃହଂ ତସ୍ୟ ଭୂମୀ-
ର୍ଦ୍ଧତେ ବନ୍ଧୁଭୋ ବନ୍ଧୁଭି ଭୂମିଦେବାଃ ।
ଗୁରୌଧର୍ମଗେ ବାନ୍ଧବାଃ ପୂଜ୍ୟବିନୀତାଃ
ସଦାଳସ୍ୟତୋ ଧର୍ମବୈଗୁଣ୍ୟକାରୀ । ୯ ।

ବୃହସ୍ପତି ନବମ ଭାବରେ ଥିଲେ ମନୁଷ୍ୟ ଦ୍ୱିଜପ୍ରିୟ ହୁଏ ସେ ଆଳସ୍ୟ ବୁଦ୍ଧି ହେତୁ ସନ୍ଧ୍ୟା ବନ୍ଦନାଦି ଧର୍ମ କାର୍ଯ୍ୟ ନଷ୍ଟ କରେ ବନ୍ଧୁଜନଙ୍କ-ଠାରେ ପ୍ରସନ୍ନତା ହୋଇଥାଏ । ସେ ଉତ୍ତମାଳୟ କରି ସେ ଗୃହର ଚତୁଃ-

ପାର୍ଶ୍ୱରେ ଦରଜା ( ଦ୍ୱାର ) ରଖି ତହିଁରେ ବାସକରେ । ଜାତେ ଧର୍ମାତ୍ମା ସତ୍ୟବାଦୀ ଦୟାବାନ୍ ଧନବାନ୍ ହୋଇ ଇଷ୍ଟ ବନ୍ଧୁଜନ ସହିତ ଭୋଗକରେ ଓ ପ୍ରତାପବାନ୍ ଖ୍ୟାତବନ୍ତ ହୁଅଇ । ୯ ।

ଗୁରୌ କର୍ମଗେ ମନ୍ଦିରଂ ଚନ୍ଦ୍ରଶାଳଂ
ପିତୁଃ ପୂର୍ବଜେଭ୍ୟୋଽପି ତେଜୋଽଧିକତ୍ୱାତ୍ ।
ନ ତୁଷ୍ଟୋ ଭବେଚ୍ଛର୍ମଣାପୂର୍ବକାଣାଂ
ପଟେପ୍ରତ୍ୟହଂ ପ୍ରସ୍ଥ ସାମୁଦ୍ରମନ୍ନଂ । ୧୦ ।

ବୃହସ୍ପତି ଦଶମଭାବରେ ଥିଲେ ମନୁଷ୍ୟ ମନ୍ଦିର ( ଗୃହ ) ଚନ୍ଦ୍ରଶାଳ ଆଦି ଭବ୍ୟମାଳୟ ତୟାର କରଏ ଓ ତହିଁ ମଧ୍ୟରେ ସେ ବାସକରେ ଏବଂ ଦେବ ପ୍ରତିମାଦି ରଖେ । ପିତା ଓ ଜ୍ୟେଷ୍ଠଭ୍ରାତା ଏମାନଙ୍କଠାରୁ ଅଧିକ ତେଜସ୍ୱାନ୍ କ ଖ୍ୟାତବନ୍ତ ହୁଏ । ସେ ପୁଣ ଅଭାବ ହେତୁ ସର୍ବଦା ଅସନ୍ତୁଷ୍ଟ ହେଉଥାଏ । ତଥାଚ ଏତେ ସୁଦ୍ଧା ଲୋକ ତାହାର ଆଶ୍ରୟରେ ରହୁଥାନ୍ତି ଯେ ଦୈନିକ ତାହାର ଗୃହରେ ଷୋଳସେର ଚାଉଳର ଅନ୍ନ ପାକ ହୋଇ ବ୍ୟୟ ହୁଅଇ ନତୁବା ଷୋଳପଣ ଲବଣ ଖାଦ୍ୟରେ ବ୍ୟୟ ହୋଇ ଥାଏ । ୧୦ ।

ଅକୂପ୍ୟଂ ଚ ଲାଭେ ଗୁରୌ କାନ୍ତଲଭ୍ୟଂ
ବଦନ୍ତି ସୁଧୀମନ୍ତମାନେ୍ୟ ମୁନୀନ୍ଦ୍ରାଃ ।
ପିତୁର୍ଭାର ଭୃତ୍ୟାଙ୍ଗ ଜାତସ୍ୟ ପଶ୍ଚ-
ପରାର୍ଥ ସ୍ପୃହାର୍ଥୋ ନ ଚେତ୍ ଦ୍ୱିଭବାପ୍ତ । ୧୧ ।

ବୃହସ୍ପତି ଲାଭସ୍ଥାନରେ ଥିଲେ ମନୁଷ୍ୟ ବହୁତ ଧାତୁଦ୍ରବ୍ୟାଦି ( ସୁବର୍ଣ୍ଣ ରୌପ୍ୟାଦି ) ଲାଭକରେ ତାହାର କୀର୍ତ୍ତିକୁ ମୁନିଜନମାନେ ପ୍ରଶଂସା କରୁଥାନ୍ତି । ସେ ପିତୃ ସମ୍ପତ୍ତିକୁ ଚିରକାଳଭୋଗକରେ ତାହାର ପଶ୍ଚପୂର୍ବ ଜୀବିତ ହୋଇଥାନ୍ତି । ପରର ଅର୍ଥକୁ ଅନିଚ୍ଛୁକ ହୁଏ ନିଜ ଉପାର୍ଜ୍ଜନ ଦ୍ୱାରା ଧନବାନ୍ ହୋଇ ଯାନ ବାହନ ଭୋଗ କରୁଥାଏ ।୧୧।

ଯଶଃ କୀଦୃଶଂ ସଦ୍‌ବ୍ୟୟେ ସାଭିମାନେ
ମତିଃ କୀଦୃଶୀ ବଞ୍ଚନା ଚେତ୍‌ବୃହେଷାଂ ।

ବଧ୍ୱଃ କ୍ରୀଡୁକ୍ଷେତ୍ରେଽର୍ଥସ୍ୟ ନାଶୋ ହି ଯେନ
କମ୍ପ୍ରସ୍ତେ ଭବେଷ୍ଣୁ ବ୍ୟୟେ ଯସ୍ୟ ଜୀବଃ । ୧୨ ।

ବୃହସ୍ପତି ବ୍ୟୟଭାବରେ ଥିଲେ ମନୁଷ୍ୟର ଯଶ ବୁଦ୍ଧି ଓ ଧର୍ମ ଏ ତିନହେଁ ନାଶ ହୁଅନ୍ତି । ସେ ମନୁଷ୍ୟ ସଦ୍ବ୍ୟୟୀ ହୁଏ ଓ ଅଭିମାନୀ ହେତୁ ଯଶ ନାଶ କରେ, ଅନ୍ୟ ଲୋକମାନଙ୍କୁ ଠକାଇବା ବ୍ୟବସାୟରେ ଠକ କାର୍ଯ୍ୟ କରିବାରୁ ତାହାର ବୁଦ୍ଧି ହାନି ହୁଏ । ସେ ଅବିହିତ କାର୍ଯ୍ୟରେ ଶ୍ରମୀ ହୋଇ ଅର୍ଥକ୍ଷୟ କରିବାରୁ ବଧ୍ୱସ୍ଥାନ ହେତୁ ନିନ୍ଦନୀୟ ହୁଏ ।୧୨।



## ଶୁକ୍ରଭାବ ଫଳଂ ।

ସମୀଚୀନମଙ୍ଗଃ ସମୀଚୀନସଙ୍ଗଃ
ସମୀଚୀନବସ୍ତ୍ରାଙ୍ଗନାଭୋଗଯୁକ୍ତଃ
ସମୀଚୀନକର୍ମା ସମୀଚୀନଶର୍ମା
ସମୀଚୀନଶୁକ୍ରୋ ଯଦା ଲଗ୍ନବର୍ତ୍ତୀ । ୧ ।

ଅର୍ଥ—ଶୁକ୍ର ଲଗ୍ନଭାବରେ ଥିଲେ ମନୁଷ୍ୟର ଶରୀର ସୁନ୍ଦର ହୁଏ, ସେ ଉତ୍ତମଜନ ସଙ୍ଗରେ ସଙ୍ଗ ହୋଇଥାଏ ତାହାକୁ ଉତ୍ତମା ସ୍ତ୍ରୀ ମିଳଇ ସେ ତାହା ସଙ୍ଗରେ ସୁଖ ଭୋଗରେ ନିମଗ୍ନ ହୋଇ କାଳାତୀତ କରେ । ଧନବାନ୍ ହୋଇ ସତ୍କାର୍ଯ୍ୟାଦି କରୁଥାଏ ଓ ବିଦ୍ୟାବାନ୍ ହୁଏ । ତାହାର ଅଳ୍ପାବସ୍ଥାରୁ ଶେଷ ପର୍ଯ୍ୟନ୍ତ ସର୍ବ ସମ୍ପଦ ପରିପୂର୍ଣ୍ଣ ହୋଇ ରହିଥାଏ ।୧

ମୁଖଂ ଚାରୁଭାଷଂ ମନୀଷାପି ଚାର୍ବୀ
ମୁଖଂ ଚାରୁ ଚାରୂଣି ବାସାଂସି ତସ୍ୟ ।
କୁଟୁମ୍ବସ୍ଥିତଃ ପୂର୍ବଦେବସ୍ୟ ପୂଜ୍ୟଃ
କୁଟୁମ୍ବେ ନ କଂ ଚାରୁ ଚାର୍ବଙ୍ଗିକାମଃ । ୨ ।

ଶୁକ୍ର ଧନଭାବରେ ଥିଲେ ମନୁଷ୍ୟର ମୁଖ ସୁନ୍ଦର ଚତୁରବୁଦ୍ଧି ଧର୍ମିଷ୍ଠ ମଧୁରଭାଷୀ ଉତ୍ତମ ବସ୍ତ୍ରପ୍ରହରଣକର୍ତ୍ତା ସ୍ୱକୁଟୁମ୍ବାଦିରେ ମେଳ ଏବଂ ଉତ୍ତମ ସ୍ତ୍ରୀଭୋଗୀ ହୁଅଇ । ୨ ।

ଋଜୁଃ ସ୍ତ୍ରୀ ଜନେ ତସ୍ୟ ନୋବନ୍ଧୁନାଶୋ
ଗୁରୁର୍ଯସ୍ୟ ଦୁଶ୍ଚିକ୍ୟ ଗୋଦାନବାନାଂ ।
ନ ଦୃଷ୍ଟେ ଭବେତ୍ପୂର୍ବ ସୌଖ୍ୟେଽପି ସେନ -
ପତିଃ କାତରତ୍ୱଦାନସଂଗ୍ରାମକାଳେ । ୩ ।

ଶୁକ୍ର ତୃତୀୟ ଭାବରେ ଥିଲେ ମନୁଷ୍ୟ ସ୍ତ୍ରୀମାନଙ୍କ ସହ ଅପ୍ରୀତି ଭାବ-କରେ । ତାହାର ଭ୍ରାତୃ ଓ ବନ୍ଧୁ ହାନି ହୁଅନ୍ତି । ପୂର୍ବ ସୁଖରେ ଅଶା ତୃପ୍ତ ହୁଅଇ ନାହିଁ । ନିଜେ ସୈନ୍ୟାଧ୍ୟକ୍ଷ ହୋଇ ଯୁଦ୍ଧରେ ଓ ଦାନ ଦେବା ସମ୍ବନ୍ଧେ ସ୍ୱୀକାରକରି ଶେଷେ କାତର ହୁଅଇ । ୩ ।

ମହତ୍ତ୍ୱେଽଧିକୋଯସ୍ୟ ତୁର୍ଯେ୍ୟାଽସୁରେଜ୍ୟୋ
ଜନୈଃ କିଂ ଜନୈଶ୍ଚାପରୈର୍ଦ୍ଦୃଷ୍ଟତୁଷ୍ଟୈଃ ।
କ୍ରିୟତ୍ପ୍ରୋଷସ୍ୟୋକ୍ତନ୍ମତଃ ସଜ୍ଜନନ୍ୟା
ଅଧୀନାର୍ପିତୋପାୟନୈ ରେବପୂର୍ଣ୍ଣୈଃ । ୪ ।

ଶୁକ୍ର ଚତୁର୍ଥ ଭାବରେ ଥିଲେ ମନୁଷ୍ୟ ପୂଜା ଧ୍ୟାନ ବନ୍ଦନାଦି କାର୍ଯ୍ୟରେ ନିଯୁକ୍ତ ହୁଅଇ ଓ ସକଳ ଜନରେ ଆଦରଣୀୟ ହୋଇଥାଇ ମାତୃରେ ସୁଖୀ ହୁଏ ଯାହା କି ଉପାର୍ଜ୍ଜନ କରେ ତାହା ମାତୃହସ୍ତେ ଅର୍ପଣ କରେ, ଉପାୟକାରୀ ହୁଅଇ । ଯେ ଲୋକମାନେ ଅସାକ୍ଷାତରେ ତାହାର ନିନ୍ଦା କରୁଥାନ୍ତି ସାକ୍ଷାତ ହେଲେ ପ୍ରଶଂସା କରି ଆଦର କରନ୍ତି । ୪ ।

ସତ୍ପୁତ୍ରେଽପି କିଂ ଯସ୍ୟ ଶୁକ୍ରୋ ନ ପୁତ୍ରେ
ପ୍ରଯାସେନ କିଂ ଯତ୍ର ସମ୍ପାଦିତାର୍ଥଃ ।
ବୁଦର୍କଂ ବିନାମନ୍ତ୍ରନିଷ୍ଠା ସନାଭ୍ୟା-
ମଧୀତେନ କିଂ ଚେତ୍କବିତ୍ୱେ ନ ଶକ୍ତିଃ । ୫ ।

ଶୁକ୍ର ପଞ୍ଚମ ଭାବରେ ନ ଥିଲେ ମନୁଷ୍ୟ ସତ୍ପୁତ୍ରବାନ୍ କିପରି ହେବ ଧନ ଇତ୍ୟାଦି କିପରି ସମ୍ପାଦନ କରି ପାରିବ । ମନ୍ତ୍ର ପାଠ ଓ ଜପ ଧ୍ୟାନ ବନ୍ଦନାଦି ଇଷ୍ଟଦେବ ସେବା କିପରି କରିବ ? ତାହାର କବିତା ଶକ୍ତିରେ ପ୍ରଶଂସା ଲାଭ କିପରି ପାଇ ପାରିବ । ଶୁକ୍ର ପଞ୍ଚମ ଭାବରେ ଥିଲେ ଏହି ସମସ୍ତ ବିଷୟଗୁଡ଼ିକ ଯଥାରୂପେ ହୁଅଇ । ୫ ।

ସଦା ଦାନବେଜ୍ୟୋଽସୁଧାଽଙ୍କୁଶାଙ୍କ୍ଷ
ବ୍ୟୟୀଃଶତ୍ରୁଗେ ଚୌର୍ଯ୍ୟମୌର୍ଯ୍ୟୌ ଭବେତାଂ
ବିପଦ୍ୟେତେ ସମ୍ପାଦିତଂ ଶ୍ରୀଫିକୃତ୍ୟଂ
ତପେନ୍ଦ୍ରୋନ୍ନତଃ ପୂଜ୍ୟସୌଖ୍ୟଂ ନ ଧତ୍ତେ । ୬ ।

ଶୁକ୍ର ଷଷ୍ଠ ଭାବରେ ଥିଲେ ମନୁଷ୍ୟ ଅମୃତ ପଦାର୍ଥାଦିର ବାସନା ଭୋଗୀ ( ଦେବତା ସମାନ ) ହୁଅଇ । ସଂଗ୍ରାମରେ ଦୃଢ଼ତା ପ୍ରକାଶ କରି ଶତ୍ରୁଜୟୀ ହୁଏ । ଉତ୍ତମ କାର୍ଯ୍ୟରେ ଧନ ବ୍ୟୟ କରେ, ଶ୍ରେଷ୍ଠ କ୍ରିୟାବାନ୍ ହେଲେ ମଧ୍ୟ ଅଳସ୍ୟ ବୁଦ୍ଧି ହେତୁ ତପ ଉପାଦି ବଧିମତ କରି ନ ପାରେ ସେ ଯେ ଅର୍ଥ ସମ୍ପାଦନ କରିଥାଏ ତାହା ବିପଦହେତୁ ବ୍ୟୟ ହୁଅଇ ॥

କଳତ୍ରେ କଳତ୍ରାତ୍ସୁଖଂ ନୋକଳତ୍ରା-
ତ୍ପ୍ରକଳତ୍ରୁ ଶୁକ୍ରେ ଭବେଦ୍ରତ୍ନଗର୍ଭଂ ।
ବିଳାସାଧିକୋ ଗଣ୍ୟତେ ଚ ପ୍ରବାସୀ
ପ୍ରସୂତିସାନ୍ଧ୍ୟକଃ କେନ ମୂହ୍ୟନ୍ତି ତସ୍ମାତ୍ । ୭ ।

ଶୁକ୍ର ସପ୍ତମ ଭାବରେ ଥିଲେ ମନୁଷ୍ୟର ସ୍ତ୍ରୀ କଷ୍ଟୀଯୁକ୍ତ ପୀଡ଼ାଭୋଗୀ ହୁଅଇ ଏବଂ ସେ ଉତ୍ତମ ପୁତ୍ର ଜାତ କରିବାରୁ ତାହାକୁ ରତ୍ନଗର୍ଭ ବୋଲି ଲୋକମାନେ କହନ୍ତି, ପୁରୁଷ ନିଜେ ପ୍ରବାସୀ ବିଶେଷ କାମାତୁର ଓ ସ୍ୱଳ୍ପ ଉଦ୍ୟୋଗୀ ଏବଂ ଚତୁର ହୁଏ । ଏପରି ଚତୁର ହୁଅଇ ଯେ ତାହାର ଚତୁର ଗୁଣରେ ଅନେକ ଜନମାନଙ୍କୁ ବଶବର୍ତ୍ତୀ କରିଥାଇ ।୭।

ଜନଃ କ୍ଷୁଦ୍ରବାଧା ଚରଂ ଶ୍ରୁଜୀବେ-
ଚତୁଷ୍ପାତ୍ସୁଖଂ ଦୈତ୍ୟପୂଜ୍ୟୋଽଦଦାତି ।
ମନୁଷ୍ୟେଷ୍ଟମେ କଷ୍ଟସାଧ୍ୟୋ ଯଥାର୍ଥଃ
ପୁନର୍ବର୍ଦ୍ଧତେ ଘାସ୍ୟମାନଂ ଧନର୍ଣ୍ଣଂ । ୮ ।

ଶୁକ୍ର ଅଷ୍ଟମ ଭାବରେ ଥିଲେ ମନୁଷ୍ୟ ଦୀର୍ଘଜୀବୀ କ୍ଷୁଦ୍ର ବାଧା (ଖରୁଆ) ହୁଅଇ, ତାହାର ଗୋରୁ ଓ ଘୋଡ଼ାଦି ପଶୁଜୀବ ବହୁତ ଥାଆନ୍ତି । ସେ କଷ୍ଟ ସହ୍ୟେ ଉପାୟକାରୀ ହୁଏ, ସେ ଅନେକ ବାର ଋଣଗ୍ରସ୍ତ ଓ ଋଣ ମୁକ୍ତ ହୋଇଥାଏ ଶେଷକୁ ଅଋଣୀ ହୁଅଇ । ୮ ।

ଭୃଗୌହି ତ୍ରିକୋଣେ ପୁରେକେ ନ ପୌତ୍ରଃ
କୁସୀଦେନ ଯେ ବୃଦ୍ଧି ନଯେତ୍ ଦଧାରନ୍ ।
ଗୃହେ ଲକ୍ଷ୍ମାଯୁତେ ତସ୍ୟ ଧର୍ମଧ୍ୱଜାଦେଃ
ସହୋତ୍ଥାଦ୍ଧସୌଖ୍ୟଂ ଶରୀରେ ସୁଖଂ ଚ । ୯ ।

ଶୁକ୍ର ନବମ ଭାବରେ ଥିଲେ ମନୁଷ୍ୟ ଏପରି ଧନୀ ହୁଏ ଯେ, ଯେ ଗ୍ରାମରେ ସେ ବସତି କରିଥାଏ ସେ ଗ୍ରାମବାସୀମାନେ ତାହାଠାରୁ ଋଣ ଗ୍ରହଣ କରୁଥାନ୍ତି ଓ ସେମାନଙ୍କ ବୃଦ୍ଧିଦାତା ହୋଇଥାଏ । ଗୃହରେ ଧର୍ମଧ୍ୱଜା ( ଧର୍ମ ପତାକା ) ଉଡୁଥାଏ, ଦାନଦେବା ସମ୍ବନ୍ଧେ ତତ୍ପର ( ସଦାବର୍ତ୍ତ ଅନ୍ନ ) ଦିଅଇ । ସେ ଭ୍ରାତୃ ସୁଖରେ ବିଶେଷ ସୁଖୀ ହୁଏ ଓ ନିଜ ଶରୀର ଆରୋଗ୍ୟ ଭାବେ କାଳାତୀତ କରଇ । ୯ ।

ଭୃଗୁଃ କର୍ମଗେ ଗୋଧନଧାନ୍ୟଂ ଋଣଞ୍ଚ
ଷଷ୍ଠ୍ୟାର୍ଥଂ ଭ୍ରମଃ କନ୍ୟାଅସ୍ମୀସ୍ତ୍ୱେବ ।
ତୁଲାମାନତୋ ହାଟକଂ ବିପ୍ରବୃତ୍ତ୍ୟା
ଜନାଡ଼ମ୍ବରୈଃ ପ୍ରତ୍ୟହଂ ବାଦବାଦାତ୍ । ୧୦ ।

ଶୁକ୍ର ଦଶମ ଭାବରେ ଥିଲେ ମନୁଷ୍ୟର ଅଳ୍ପ ବୟସରେ ପୁତ୍ର ଲାଭ ଓ ବହୁ ପୁତ୍ରବାନ୍ ହୁଏ ଯେ, ଲୋକମାନେ ଏହାର ପୁତ୍ର ବୋଲି କହି ପାରନ୍ତି ନାହିଁ । ନିଜେ ଅଡ଼ମ୍ବର କରି ସୁବର୍ଣ୍ଣାଦିରେ ବେଷ୍ଟିତ ହୋଇଥାଏ ବ୍ରାହ୍ମଣ ବୃତ୍ତି ଦ୍ୱାରା ମଧ୍ୟ ଧନ ଉପାର୍ଜନ କରେ, ପିତୃ ସମ୍ପତ୍ତିଠାରୁ ଅଧିକ ସମ୍ପତ୍ତି କରେ, ଲୋକମାନଙ୍କୁ ଭୟ ଦେଖାଇବା ବ୍ୟବସାୟକାରୀ ହୁଏ । ସେ ଏପରି ବ୍ୟବସାୟ କରେ ଯେ, ତହିଁରୁ ଦୈନିକ ଶତପଳ ସୁବର୍ଣ୍ଣ ଲାଭ କରି ପାରଇ । ୧୦ ।

ଭୃଗୁର୍ଲାଭଗୋ ଲାଭଦୋ ଯସ୍ୟଲଗ୍ନା-
ତ୍ସ୍ୱରୂପଂ ମନ୍ମଥଂ ଚ କୁର୍ଯ୍ୟାଚ୍ଚ ସମ୍ୟକ୍ ।
ଲସତ୍ କୀର୍ତ୍ତି ସତ୍ୟାନୁରାଗଂ ଗୁଣାଢ଼୍ୟଂ
ମହାଭୋଗମୈଶ୍ୱର୍ଯ୍ୟଯୁକ୍ତଂ ସୁଶୀଳଂ । ୧୧ ।

ଶୁକ୍ର ଏକାଦଶ ଭାବରେ ଥିଲେ ମନୁଷ୍ୟର ଶରୀର ସୁନ୍ଦର ହୁଅଇ । ସେ କୀର୍ତ୍ତିଯୁକ୍ତ ଓ ସତ୍ୟ କଥାରେ ରତ ହୋଇଥାଏ । ଐଶ୍ୱର୍ଯ୍ୟବାନ୍

ଗୁଣବାନ୍ ଲୋକ ସ୍ନେହୀ ଓ ଉତ୍ତମ ଭୋଗବାନ୍ ହୁଅଇ । ରାଜାଠାରୁ ସମ୍ମାନଯୁକ୍ତ ଅଧିକାର ପ୍ରାପ୍ତ ହୋଇଥାଏ । ୧୧ ।

କଦାବ୍ୟେତି ବସ୍ତୁଂ ବଲ୍ଲଭ୍ୟେତ ପିତ୍ତଂ
ସିତୋ ଦ୍ୱାଦଶେ କେଳ ସତ୍କର୍ମଶର୍ମା ।
ଗୁଣାନାଂ ଚ କୀର୍ତ୍ତିକ୍ଷୟଂ ମିତ୍ର ବୈରଂ
ଜନାନାଂ ବଶେଧଂ ସଦାଽସୌକରୋତି । ୧୨ ।

ଶୁକ୍ର ଦ୍ୱାଦଶ ଭାବରେ ଥିଲେ ମନୁଷ୍ୟ କେଳ କୌତୁକ ଓ ସତ୍ କାର୍ଯ୍ୟାଦରେ ଅର୍ଥ ବ୍ୟୟ କରେ । ଗୁଣ ଓ କୀର୍ତ୍ତି କ୍ଷୟ କରେ, ମିତ୍ର-ଜନଙ୍କୁ ଶତ୍ରୁଭାବ କରେ ସମୟେ ସମୟେ ଧନ ଲଭ୍ୟକାରୀ ହୁଏ । ବ୍ୟୟା-ଧିକ୍ୟ ଯୋଗୁଁ ଧନହାନି ହୁଏ, ତାହାର ପିତ୍ତ ଧାତୁ କଫ ରୋଗାଦରେ ପୀଡ଼ା ଭୋଗ କରେ, ମନ୍ଦ ବୁଦ୍ଧି ହେତୁ ଗ୍ରାମ୍ୟ ଲୋକଙ୍କ ସହିତ ବିରୋଧୀ ହୋଇ ଅପଚୟ ଭୋଗ କରଇ । ୧୨ ।



## ଶନିଭାବ ଫଳଂ ।

ଧନେନାତି ପୂର୍ଣ୍ଣୋଽତିତୃଷ୍ଣାବିଷାଦୀ
ତନୁସ୍ଥେଽର୍କଜେ ସ୍ଥୂଳଦୃଷ୍ଟି ର୍ନରଃ ସ୍ୟାତ୍ ।
ବିଷଂ ଦୃଷ୍ଟି ଜନ୍ମାଧିକୃଦ୍ବ୍ୟାଧି ବାଧାଃ
ସ୍ୱୟଂ ପୀଡ଼ିତୋ ମଧ୍ୟଦେଶଏବ । ୧ ।

ଅର୍ଥ ।—ଶନି ଲଗ୍ନ ଭାବରେ ଥିଲେ ମନୁଷ୍ୟ ସ୍ଥୂଳଦୃଷ୍ଟି ବା ଲୋଭ ପର-ଶ୍ରୀକାତର ମଦ୍ୟ ମାଂସ ଭୋଗୀ ଧନ ଲାଭରେ ଅତୃପ୍ତି ବିଷାଦଯୁକ୍ତ ( ମାନସିକ ବ୍ୟଥା ) ଓ ଶରୀରକ୍ଲେଶୀ ମନ୍ଦବୁଦ୍ଧି ହୁଅଇ । ୧ ।

ସୁଖୋପେକ୍ଷୟା ବର୍ଜିତୋଽସୌ କୁଟୁମ୍ବା-
ତ୍କୁଟୁମ୍ବେ ଶନୌ ବସ୍ତୁ କଂ କାନ୍ତ ଭୁଙ୍କ୍ତେ ।
ସମଂ ବକ୍ତ୍ରି ମିତ୍ରେଣ ତକ୍ତଂ ବଚୋଽପି
ପ୍ରସକ୍ତଂ ବିନା ଲୋହକଂ କୋ ଲଭେତ । ୨ ।

ଶନି ଦ୍ୱିତୀୟ ଭାବରେ ଥିଲେ ମନୁଷ୍ୟ ସୁଖଭୋଗ ଅପେକ୍ଷାରେ କୁଟୁ-

ସ୍ୱାଦମାନଙ୍କ ସଙ୍ଗରୁ ତ୍ୟାଗୀ ହୋଇ ପୃଥକ୍ ରହେ ବା ବିଦେଶରେ ବାସ କରେ ସେ ସୁଖ ଭୋଗକରେ ମିତ୍ରଜନମାନଙ୍କୁ କଟୁତା ବାକ୍ୟ କହେ । ବିନା ଉଦ୍ୟୋଗରେ ଲୌହ ଅନ୍ନ୍ୟ ବା ଧାତୁଦ୍ରବ୍ୟାଦି ବ୍ୟବସାୟ କରି ଅର୍ଥ ଲାଭ କରଇ । ୨ ।

ତୃତୀୟେ ଶନୌ ଶୀତଳଂ ନୈବ ଚିତ୍ତଂ
ଜନାଦ୍ଧ୍ୟଦ୍ୟମାତ୍ମାସୁତେ ଯୁକ୍ତଭାଷୀ ।
ଅବଦ୍ଧଂ ଭବେତ୍ତୁ କହିଁଚିନ୍ନିବଭାଗ୍ୟଂ
ଦୃଢ଼ାଶଃ ସୁଖୀ ଦୁର୍ମୁଖଃ ସଲ୍ଲତୋଽପି । ୩ ।

ଶନି ତୃତୀୟ ଭବରେ ଥିଲେ ମନୁଷ୍ୟ ଭ୍ରାତୃଜନେ ବିରୋଧୀ ହୁଏ ତାହାର ମନ ସର୍ବଦା ସନ୍ତପ୍ତ ହୋଇଥାଏ କହିବା ଶକ୍ତି ଅଳ୍ପ ହୁଏ ଯେ କିଛି ଲଭ୍ୟ କରିବାକୁ ଇଚ୍ଛାକରି କାର୍ଯ୍ୟ କରେ ତହିଁରେ ବିଘ୍ନ ଘଟେ ସର୍ବଦା ଚଞ୍ଚଳଚିତ୍ତ ଅତୃପ୍ତି ଆଶାହେତୁ ସୁଖହୀନ ହୁଏ । ଲୋକମାନେ ଆଦରଣ କରି ସ୍ନେହ କଥା କହିଲେ ତାହାଙ୍କୁ କଟୁ କଥା କହଇ, ଏତେ କୁଗୁଣ ଥିଲେ ସୁଦ୍ଧା ସେ ଭାଗ୍ୟବାନ୍ ହୋଇଥାଏ । ୩ ।

ଚତୁର୍ଥେ ଶନୌ ପୈତୃକଂ ଯାତି ଦୂରଂ
ଧନଂ ମନ୍ଦିରଂ ବନ୍ଧୁବର୍ଗାପବାଦଃ ।
ପିତୁଶ୍ଚାପି ମାତୁଶ୍ଚ ସନ୍ତାପକାରୀ
ଗୃହେ ବାହନେ ହାନିସ୍ୟୋ ବାତରୋଗୀ । ୪ ।

ଶନି ଚତୁର୍ଥ ଭବରେ ଥିଲେ ମନୁଷ୍ୟ ପିତୃ ଧନରେ ଅଧିକାରରହିତ ହୁଏ ଯଦବା ଅଧିକାର ରହିଥାଏ ସେ ଧନକୁ ଭୋଗକରି ନ ପାରେ । ବନ୍ଧୁବର୍ଗାଦିରେ ଅପବାଦ ( ନିନ୍ଦା ) ଭାଗୀ, ଗୃହ ଓ ବାହନ ହାନି ମାତୃ ପିତୃରେ ସନ୍ତାପକାରୀ ହୁଏ ନିଜେ ବାତରୋଗରେ ପୀଡ଼ିତ ହୁଅଇ ॥

ଶନୌ ପଞ୍ଚମେ ଚ ପ୍ରଜାହେତୁ ଦୁଃଖୀ
ବିଭୂତିସ୍ତୁଲା ତସ୍ୟ ବୁଦ୍ଧିର୍ନଶୁଦ୍ଧା ।
ରତିର୍ଦ୍ଦେବତେ ଷଡ଼ଶାସ୍ତ୍ରେନ ତନ୍ତ୍ର-
ଚ୍ଛଳ ନିଂକତୋ ମନ୍ଦତଃ କ୍ରୋଡ଼ପୀଡ଼ା । ୫ ।

ଶନି ପଞ୍ଚମ ଭବରେ ଥିଲେ ମନୁଷ୍ୟ ପୁତ୍ରହେତୁ ଦୁଃଖ ଭୋଗ

ଙ୍କରେ ତାହାର ବୁଦ୍ଧି ମନ୍ଦ ( କପଟ ) ହୁଅଇ ସମ୍ପତ୍ତି କ୍ଷୟକାରୀ ବେଦ-ଶାସ୍ତ୍ରାଦିରେ ଅବିଶ୍ୱାସ, ମିତ୍ରଜନ ସହ କଳହକର୍ତ୍ତା ହୁଅଇ ଏବଂ ସମୟେ କ୍ଷୁଧିବେଗ ( କ୍ଷୋଭବେଗ ) ରେ ପୀଡ଼ିତ ହୁଏ । ୫ ।

ଅରେ ଭୂ ଘଟେ ସ୍ତୌରଟୋ ଭ୍ରାତୃୟଃ କିଂ
ଯଦ୍ୟତସ୍ୟ ପୁତ୍ରୋ ଭବେଦସ୍ୟ ଶତ୍ରୋଃ ।
ନ ଯୁଦ୍ଧେ ଭବେତ୍ସମ୍ମୁଖେ ତସ୍ୟ ଯୋଦ୍ଧା
ମହିଷ୍ୟାଦିକେ ମାତୁଳାନାଂ ବିନାଶଃ । ୬ ।

ଶନି ଷଷ୍ଠ ଭବରେ ଥିଲେ ମନୁଷ୍ୟଙ୍କୁ ରାଜା ଓ ଚୋର ଏହାଙ୍କ ଭୟ ହୁଅଇ ନାହିଁ । କି ସେ ଏହାଙ୍କୁ ଭୟ ନ କରେ, ପୁତ୍ରଥିଲେ ତାହା-ଠାରେ ମମତା ରହିତ ହୋଇଥାଏ । ପୁତ୍ର ନ ଥିଲେ ସୁଦ୍ଧା ଏକା ଏକ ଶତ୍ରୁଜୟୀ ଏପରି ହୁଅଇ ଯେ ଯୁଦ୍ଧସ୍ଥାନରେ ତାହାର ସମ୍ମୁଖରେ ଅନ୍ୟ ଯୋଦ୍ଧା ରହିପାରଇ ନାହିଁ, ତାହାର ମହିଷ ଆଦି ପଶୁଜୀବ ବିଶେଷ ଥାନ୍ତି ଓ ମାମୁ ବଂଶରେ ଦୁଃଖଭୋଗ ବା ମାତୁଳହାନି ହୁଅଇ । ୬ ।

ମୂଦାରଣ୍ଟ ମିତ୍ରଂ ଚିରଂ ଗୃହୁ ବଦ୍ଧଂ
ଶନୈର୍ଦ୍ଧ୍ୟୂନଗେ ଦମ୍ପତୀ ରୋଗଯୁକ୍ତୌ ।
ଅନୁତ୍ସାହସନ୍ତପ୍ତବୁଦ୍ଧୀନଚେତାଃ
କୁତୋ ବୀର୍ଯ୍ୟବାନ୍ ବହ୍ନିଲୋଚଲ୍ଲୋଲୁପଃ ସ୍ୟାତ୍ । ୭ ।

ଶନି ସପ୍ତମ ଭବରେ ଥିଲେ ମନୁଷ୍ୟଙ୍କୁ ଉତ୍ତମ ସ୍ତ୍ରୀ ମିଳିଲେ ସୁଦ୍ଧା ସେ ସ୍ତ୍ରୀ ରୋଗଯୁକ୍ତା ଓ ବିମନା ହୁଏ ଏବଂ ସେ କଟୁତାବାକ୍ୟ ପ୍ରକାଶକରେ ନିଜେ ଅଳ୍ପସ୍ଥାୟୀ ଧନଯୁକ୍ତ ହେଲେ ମଧ୍ୟ ସମୟେ ଅର୍ଥବିହୀନ ହୁଅଇ ଓ ସେ ଅନୁତ୍ସାହସୀ (ଆଳସ୍ୟଯୁକ୍ତ) ହୁଏ । ତାହାର ବୁଦ୍ଧି ମଳିନ ଏ ହେତୁ କଥା ଅସ୍ଥିର କହେ ଓ ଲୋଭଗ୍ରସ୍ତ ହୁଏ ବଳହୀନ ( ହୀନ-ପ୍ରାକ୍ରମି ) ହୁଅଇ । ୭ ।

ବିଯୋଗୋଜନାନାଂ ଭ୍ରମୌପାଧିକାନାଂ
ବିନାଶୋଧନାନାଂ ସକୋପସ୍ୟ ନ ସ୍ୟାତ୍ ।
ଶନୈରନ୍ଧ୍ରଗେ ବ୍ୟାଧିତଃ କ୍ଷୁଦ୍ରଦର୍ଶୀ
ତଦଗ୍ରେ ଜନଃ କୈତବଂ କିଂ କରୋତୁ । ୮ ।

ଶନି ଅଷ୍ଟମ ଭବରେ ଥିଲେ ମନୁଷ୍ୟ ବ୍ୟାଧିରହିତ ଭୁଜଙ୍ଗସର୍ଗୀ କ୍ରୋଧାସକ୍ତ ଧନହାସକାରୀ ହୀନଦୃଷ୍ଟି ଓ ବ୍ୟାଧିବନ୍ତ ହୁଅଇ ଏବଂ ତାହାର ସମ୍ମୁଖେ ଅନ୍ୟକେହି ଧୂର୍ତ୍ତପଣ ଓ କୈତବାଦି କରିପାରନ୍ତି ନାହିଁ ଅର୍ଥାତ୍ ସେ ନିଜେ ମହା ଧୂର୍ତ୍ତ ହୁଏ । ୮ ।

ମତସ୍ତସ୍ୟ ଭକ୍ତା ନ ଭକ୍ତଂ ତୁ ଶୀଳଂ
ରତି ଯୌଗଶାସ୍ତ୍ରେ ଗୁଣୋବ୍ରଜସଃ ସ୍ୟାତ୍ ।
ସୁହୃଦ୍‌ବର୍ଗତୋ ଦୁଃଖିତୋ ହୀନବୁଦ୍ଧ୍ୟା
ଶନି ର୍ଧର୍ମଗଃ କର୍ମକୃତ୍‌ସଂନ୍ୟସେଦ୍ବା । ୯ ।

ଶନି ନବମ ଭବରେ ଥିଲେ ମନୁଷ୍ୟ ବିଷୟ ବାସନାଦିରେ ବିରକ୍ତ ଧର୍ମାଦି କାର୍ଯ୍ୟେ ମତି, ଶୀଳତାବୃଦ୍ଧି ଯୋଗଶାସ୍ତ୍ରାଦିରେ ଅଭ୍ୟାସକରି ଯୋଗବାନ୍ ରଜସ ଗୁଣରେ ପୂର୍ଣ୍ଣ ହୋଇଥାଏ । ତାର ଭ୍ରାତୃ ମିତ୍ରାଦି-ମାନେ ଦୁଃଖୀ ହୁଅନ୍ତି ସେ ତାହା ଦେଖି କାତର ହୋଇଥାଏ ବା ସେ କାରଣେ ଯତି ସନ୍ନ୍ୟାସୀ ହୋଇ ଗୃହତ୍ୟାଗ କରେ । ୯ ।

ଅଜାତସ୍ୟ ମାତା ପିତା ବାନ୍ଧବୈରେବ
ବୃଥା ସଙ୍ଗତୋ ଦୁଷ୍ଟକର୍ମାଧିପତ୍ୟାତ୍ ।
ଶନୈଶ୍ଚରେଧତେ କର୍ମଗେ ଶର୍ମମନ୍ଦୋ
ଜୟୋ ବିଗ୍ରହେ ଜୀବକାନାଂ ତୁ ଯସ୍ୟ । ୧୦ ।

ଶନି ଦଶମ ଭବରେ ଥିଲେ ମନୁଷ୍ୟ ଜନ୍ମମାତ୍ରେ ବା ଅଳ୍ପବୟସ ସମୟେ ତାହାର ମାତା ନାଶ ହୁଅଇ । ସେ ପିତାଦ୍ୱାରା ଯୁଗ ଦୁର୍ଘରେ ପୋଷିତ ହୁଏ । ଅଥବା ମାତୃ ଓ ପିତୃ ଉଭୟ ହାନି ହୋଇପାରେ । ନିଜ ବାହୁ ବଳରେ ଅର୍ଥ ଉପାର୍ଜ୍ଜନ କରେ ଅଥବା ଅଧିକାର ପ୍ରାପ୍ତ ହୁଏ ଅପରସ୍ତୁ କାର୍ଯ୍ୟେ ଚେଷ୍ଟାକରି ସେ କାର୍ଯ୍ୟେ ଜୟଲାଭ କରଇ । ୧୦ ।

ସ୍ଥିରଂ ବିତ୍ତମାୟୁଃ ସ୍ଥିରଂ ମାନସଂ ଚ
ସ୍ଥିରଶ୍ଚୈବ ରୋଗାଦୟୋ ନ କ୍ଷିତିଶି ।
ଅପତ୍ୟାନି ସୂରୈଃ ଶତାଦେକଏବ
ପ୍ରପଞ୍ଚାଧିକୋ ଲାଭଗେ ଭାନୁପୁତ୍ରେ । ୧୧ ।

ଶନି ଏକାଦଶ ଭବରେ ଥିଲେ ମନୁଷ୍ୟର ଆୟୁବୃଦ୍ଧି ଓ ଧନ ବୃଦ୍ଧି

ହୁଅଇ । ସ୍ଥିରମତି ହୁଏ ବିଶେଷ ବଳବାନ୍ ହୁଅଇ । ମନ୍ଦକାର୍ଯ୍ୟେ ପ୍ରବେଶ କରି କୂଟ କପଟ ବୁଦ୍ଧିରେ ଲଭ୍ୟକାରୀ ହୁଅଇ । ସେ ମନୁଷ୍ୟ ସର୍ବଦା ପୁତ୍ର ସମ୍ବନ୍ଧେ ଚିନ୍ତିତ ହୋଇ ଶୋକାକୁଳ ହେଉଥାଏ । ୧୧ ।

ବ୍ୟୟସ୍ଥେ ଯଦା ସୂର୍ଯ୍ୟସୂନୌନରଃସ୍ୟା-
ଦଶୂରୋଽଥ ବା ନଷ୍ଟପୋ ମନ୍ଦନେତ୍ରଃ ।
ପ୍ରସନ୍ନୋବହୁଦ୍ରୋ ଗୃହେ ଲଗ୍ନପସ୍ଥ
ବ୍ୟୟସ୍ଥେ ରିପୁଧ୍ୱଂସକୃଦ୍ଦକ୍ଷଭୋକ୍ତା । ୧୨ ।

ଶନି ଦ୍ୱାଦଶ ଭାବରେ ଥିଲେ ମନୁଷ୍ୟ କାତର ସ୍ୱଭାବ ଓ ଭୟ ଯୁକ୍ତ ହେତୁ ଲଜ୍ଜାରହିତ ହୁଏ । ସେ ମନୁଷ୍ୟର ନେତ୍ରପୀଡ଼ା ଯୋଗୁ ଅଳ୍ପ ଦୃଶ୍ୟ ହୁଅଇ । ବିଦେଶରେ ସୁଖଭୋଗ କରି ମହାନନ୍ଦ ହେଉଥାଏ । ସ୍ୱଦେଶେ ନିଜଗୃହରେ ସୁଖରହିତ ହୁଅଇ । ଯଦି-ଶନିଲଗ୍ନାଧିପତି ହୋଇ ବ୍ୟୟରେ ଥାଏ ତେବେ ମନୁଷ୍ୟ ଧନବାନ୍ ଶତ୍ରୁନାଶକ ଯଜ୍ଞ-କାର୍ଯ୍ୟାଦିରେ ଅର୍ଥବ୍ୟୟକାରୀ ହୁଅଇ । ୧୨ ।



## ରାହୁଭାବ ଫଳଂ ।

ସ୍ୱବାକ୍ୟେ ସମର୍ଥଃ ପରେଷାଂ ପ୍ରତାପାତ୍
ପ୍ରଭାବାସ୍ରମାଚ୍ଛାଦୟେତ୍ସ୍ୱାନ୍ ପରାର୍ଥାନ୍ ॥
ତମୋଯସ୍ୟଲଗ୍ନେ ସ ଭଗ୍ନାରିବୀର୍ଯ୍ୟଃ
କଳଙ୍କୋଽଧୃତଂ ଭୂରିଦାରୋଽପି ଯାସ୍ୟାତ୍ । ୧ ।

ରାହୁ ଲଗ୍ନଭାବରେ ଥିଲେ ମନୁଷ୍ୟ ଶତ୍ରୁଠାରୁ ଜୟ ଓ ଲାଭ କରେ ନିଜବଚନ ପ୍ରତିପାଳନାର୍ଥେ ପ୍ରଭାବ ଦେଖାଇ ପରୋପକାର କରି କାର୍ଯ୍ୟ ସାଧନ କରେ । ସେ ବହୁ ସ୍ତ୍ରୀଭୋଗୀ ( ଲମ୍ପଟ ) ଓ ଅତିକାମୀ ହୁଅଇ । ୧ ।

କୁଟୁମ୍ବେତମୋ କଷ୍ଟଭୂତଂ କୁଟୁମ୍ବଂ
ମୃଷାଭାଷିତାନ୍ନର୍ଭ୍ୟୋ ବତ୍ସପାଳଃ ।
ସ୍ୱଚର୍ଚ୍ଚପ୍ରନାହେଶୋଽଭ୍ୟଂଶତ୍ରୁତସ୍ତେ-
ଦବଶ୍ୟଂ ଖଳେଭ୍ୟୋ ଲଭେଦ୍ଧାରିବଶ୍ୟଂ । ୨ ।

ରାହୁ ଧନଭାବରେ ଥିଲେ ସେ ମନୁଷ୍ୟର କୁଟୁମ୍ବାଦ ବାରଂବାର ନାଶ ହୁଅନ୍ତି । ସେ ମିଥ୍ୟାଭାଷୀ କର୍ଭସ୍ତ ଚିତ୍ତରେ କହିବାର କ୍ଷମତା ହୁଅଇ ଖଳବୁଦ୍ଧିରେ ପ୍ରବଳତା ଓ ଖଳଜନାନୁରାଗୀ ହୋଇଥାଏ । ବନ୍ଧୁବଚରେ କଳହ ଜାତକରେ ଏବଂ ସୁଖୀ ଓ ଧନବାନ୍ ହୁଅଇ । ୨ ।

ନନାଗୋଽଥ ସିଂହୋଲ୍ଲକୋ ବଳମେଣ
ପ୍ରସ୍ତୀତାହ ସିଂସ୍ଥୁତେ ତସ୍ତମହ୍ଲଂ ।
ଲୁଟିତସ୍ତ ଜଗଧୋଦରତ୍ଥଂ ସମେତ
ପ୍ରଜାତେତୋଽପି ଭାଗ୍ୟଂ କୁତୋଯତ୍ନହେତୁଃ । ୩ ।

ରାହୁ ତୃତୀୟଭାବରେ ଥିଲେ ମନୁଷ୍ୟ ବାହୁବଳୀ ଧର୍ମଶାଳୀ ହୁଅଇ । ତଥାଚ ହସ୍ତୀ ବା ସିଂହପରି ବଳବାନ୍ ହୁଅଇ ନାହିଁ, ସଂସାରରେ ସମସ୍ତ ଜନମାନଙ୍କଠାରେ ଭ୍ରାତୃବତ୍ (ସୋଦର) ବତ୍ ବ୍ୟବହାର କରେ ଅର୍ଥ ସମ୍ପାଦନରେ ବହୁତ ଯତ୍ନ କରୁଥାଏ । ଭାଗ୍ୟବାନ୍ ହୋଇଥିଲେ ସୁଦ୍ଧା ଯତ୍ନ କରିବା କାର୍ଯ୍ୟ ସମୟେ୨ ଅଯତ୍ନ ହୁଅଇ ।୩।

ଚତୁର୍ଥେ କଥଂ ମାତୃ ନୈଋତ୍ୟଦେହୋ
ହୃଦ ଜ୍ୱାଳୟା ଶୀତଳଂ କିଂ ବହିଃ ସ୍ୟାତ୍ ।
ଯଦେଦନ୍ୟଥା ମେଷଗଃ କର୍କଗୋ ବା
ବୁଧର୍କ୍ଷେ ସୁରୋଭୂପତେ ବନ୍ଧୁଭୋଗଃ । ୪ ।

ରାହୁ ଚତୁର୍ଥଭାବରେ ଥିଲେ ମନୁଷ୍ୟର ମାତା ଯେ ରୋଗଯୁକ୍ତ ନ ହେବ ନିଜ ହୃଦୟ ସର୍ବଦା ସନ୍ତପ୍ତ ନ ହୋଇ ଶୀତଳ ରହିବ ଏହା କେ କହିପାରେ ? ଯଦି ରାହୁ ମେଷ କର୍କଟ କନ୍ୟା ଓ ମିଥୁନରାଶିରେ ସ୍ଥିତହୋଇ ଚତୁର୍ଥଭାବ ହୋଇଥାଏ ତଥାଚ ଅଶୁଭ ନ ହୋଇ ଶୁଭପ୍ରଦ ହୁଅଇ । ମାତାର ସୁଖ ନିଜ ଆନନ୍ଦ ଓ ହୃଦୟ ଶୀତଳ, ରାଜ ସମ୍ମାନ ବା ରାଜସହ ବନ୍ଧୁତା କରଇ । ୪ ।

ସୁତେତସ୍ତୁତୋଧୃତ୍ତି କୁକ୍ଷିଂହକାଯ୍ୟଃ
ସୁତୋଭୂମିନୀଚନ୍ଦ୍ରଯ୍ୟା ଚତ୍ତାପଃ ।
ସତ୍ତ କ୍ରୋଡ଼ରୋଗେ କମାଦ୍ୱାରହେତୁଃ
ପ୍ରପଞ୍ଚେନ କିଂ ପ୍ରାପକାଦୁଷ୍ଟବର୍ଜ୍ୟଂ । ୫ ।

ଚନ୍ଦ୍ର ପଞ୍ଚମଭାବରେ ଥିଲେ ମନୁଷ୍ୟର ସୁତହୀ ଯୋଗ ଓ ସ୍ତ୍ରୀ କର୍କଶ (କଳହା) ହୁଅଇ ଏହି ଉଭୟକାରଣ ହେତୁ ନିଜେ ସନ୍ତାପ କରୁଥାଏ କୁକ୍ଷିରୋଗୀ ଅଗ୍ନିମାନ୍ଦ୍ୟ ଅଦୃଷ୍ଟବଶତଃ ଅକସ୍ମାତ୍ ଧନପ୍ରାପ୍ତି ହେଲେ ମଧ୍ୟ ସମୟେ ସେହିପରି ଧନହାନି ହୁଅଇ । ୫ ।

ବଳଂ ବୁଦ୍ଧିବୀର୍ଯ୍ୟଂ ଧନଂ ତଦ୍ଭଣେନ
ସ୍ଥିତୋବୈରିଭାବେଽପି କ୍ଷେଶାଂ ଜନାନାଂ ।
ରିପୂଣାମରଣ୍ୟଂ ଦହେଦ୍ଦେବ ଚନ୍ଦ୍ରଃ
ସ୍ଥିରଂ ମାନସଂ ତସ୍ୟ କାନୋପୃଥିବ୍ୟାଂ । ୬ ।

ଚନ୍ଦ୍ର ଷଷ୍ଠଭାବରେ ଥିଲେ ମନୁଷ୍ୟର ବଳବୃଦ୍ଧି ପ୍ରାକର୍ମ ବିଶେଷ ହୁଅଇ । ତାହାଙ୍କୁ ଶତ୍ରୁମାନେ ଦେଖିଲେ ଭସ୍ମୀଭୂତ ହୁଅନ୍ତି ମନ ସ୍ଥିର ଓ ସମୟେ ସମୟେ ବାତୂଳବତ୍ ବାକ୍ୟ କହଇ । ଏବଂ ସତ୍କୀର୍ତ୍ତିମାନ୍-ଏପରି କାର୍ଯ୍ୟ କରଇ ଯେ ତାହାର କୀର୍ତ୍ତିକୁ ପୃଥ୍ୱୀ ମଧ୍ୟରେ ତୁଳନା କରିବାର ଅତିଅଳ୍ପ ଘଟଣା ହୋଇପାରେ । ୬ ।

ଵନାଶଂ ଲଭେଦ୍ଦୁର୍ଜନେତଦ୍ ଯୁବତ୍ୟୋ
ରିକାଧାତୁପାକାଦ୍ଦିନା ଚନ୍ଦ୍ରମର୍ଦ୍ଧ୍ୟା ।
କଟାହେ ଯଥା ଲୋହସ୍ୟେକ୍ଷାତବେଦା
ବିଯୋଗାପବାଦାଃ ସମଂ ନ ପ୍ରଯାତି । ୭ ।

ଚନ୍ଦ୍ର ସପ୍ତମଭାବରେ ଥିଲେ ମନୁଷ୍ୟର ସ୍ତ୍ରୀ ଧାତୁକ୍ଷୟାଦି ରୋଗରେ ନାଶହୁଏ । ସେ ବନ୍ଧୁଜନରେ ବଞ୍ଚିତ ( ବିରୋଧୀ ) ହୁଅଇ । ତାହାର ହୃଦୟ ସର୍ବଦା ସନ୍ତପ୍ତ ତପ୍ତକଟାହ ପ୍ରାୟେ ( କ ଡ ତଲ କଡ଼ାଇପରି ) ହୋଇଥାଏ ସେ ବହୁ ଅପବାଦ ଭୋଗକରେ ଏ ସମସ୍ତ ନିଜପତ୍ନୀ ବା କାହାର କାହାର ସ୍ତ୍ରୀପ୍ରତି ଭୋଗ ହୁଅଇ । ୭ ।

ନୃପୈଃ ପଣ୍ଡିତୈ ର୍ବନ୍ଧତୋନିନ୍ଦିତଃ ସ୍ୟେ
ସୁକୁଲଭାଗ୍ୟଲଭ୍ୟେଽସକୁଭ୍ରଂଶଏବ ।
ଧନଂ ଜାତକଂ ତଂ ଜନାସ୍ତ୍ୟଜନ୍ତି
କ୍ଷମଗନ୍ତି କୁତ୍ରୁଗୋତ୍ରଧ୍ୱଶତ୍ରୂଃ । ୮ ।

ଚନ୍ଦ୍ର ଅଷ୍ଟମଭାବରେ ଥିଲେ ମନୁଷ୍ୟ ବିଶେଷ ପରିଶ୍ରମୀ ହେବା କାର-

ଣରୁ ବାତରୋଗୀ ବା ବାୟୁଶୂଳାଦି ରୋଗରେ ପୀଡ଼ିତ ହୁଅଇ । ତାହାଙ୍କୁ ପୈତୃକଧନ ଅପ୍ରାପ୍ତ ହୁଏ । ରଜା ଓ ପଣ୍ଡିତମାନଙ୍କଠାରେ ବନ୍ଦନୀୟ ଆଦର-ଯୁକ୍ତ ହୋଇଥାଏ । ନିଜଗୁଣ କ୍ଷମତା ନିଜେ ପ୍ରଶଂସା କରି ଅନ୍ୟ ଗୁଣି-ଜନମାନଙ୍କୁ ନିନ୍ଦା କରୁଥାଇ । ୮ ।

ମନୀଷିକୃତଂ ନୟନ୍ତେଦ୍‌ବନ୍ଧୁବର୍ଗଂ
ସଦାପାଳଯେତ୍ପୂଜିତଃସ୍ୟାଦ୍ଗୁଣୈଃ ସ୍ୱୈଃ ।
ସଦ୍ୱଦେସ୍ୟାତକୋଯସ୍ୟତ୍ରେତ୍ରିକୋଣେ
ତମଃ କୌତୁକୀ ଦେବତୀର୍ଥେ ଦୟାଳୁଃ । ୯ ।

ରାହୁ ନବମଭବରେ ଥିଲେ ମନୁଷ୍ୟ ନିଜଗୁଣଦ୍ୱାରା ପୂଜ୍ୟବାନ୍ ହୁଅଇ । ସେ ବୁଦ୍ଧିମାନ୍ ବନ୍ଧୁବର୍ଗାଦିରେ ପ୍ରିୟତମ ଦୟାବାନ୍ ଦେବତା ତୀର୍ଥ ଦର୍ଶନପ୍ରିୟ ନ୍ୟାୟବନ୍ତ ସଭାପତି ବା ରାଜକାର୍ଯ୍ୟେ ନିଯୁକ୍ତ ହୋଇଥାଇ । ୯ ।

ସଦାମ୍ଲେଚ୍ଛସଂସର୍ଗତୋଃଶିବଗର୍ବଂ
ଲଭେଲ୍ଲାଲନୀ କାମିନୀ ଭୋଗମୁଚ୍ଚୈଃ ।
ଜନୈର୍ବ୍ୟାକୁଲୋଃସୌସୁଖଂନାଧିଶେତେ
ମଦେଃର୍ଥବ୍ୟୟୀକ୍ରୂରକର୍ମାଖଗୋଃସୌ । ୧୦ ।

ରାହୁ ଦଶମଭାବରେ ଥିଲେ ମନୁଷ୍ୟ ମ୍ଲେଚ୍ଛଜନ ସଂସର୍ଗୀ ବନ୍ଧୁ ଗର୍ବ ଜନ୍ମା ସ୍ତ୍ରୀଭୋଗୀ ପରସ୍ତ୍ରୀକାତର ଓ ଦୁଷ୍ଟବୁଦ୍ଧି ହୁଅଇ । ସ୍ତ୍ରୀ ଓ ମଦ ମଦ୍ୟରେ ଅର୍ଥ ବ୍ୟୟକରେ, ସେ ଗାଢ଼ ନିଦ୍ରାଭୋଗୀ ଏବଂ ଶୟନ କରି-ବାକୁ ବିଶେଷ ସୁଖ ମଣୁଥାଇ । ୧୦ ।

ସଦାମ୍ଲେଚ୍ଛତୋଃର୍ଥଂ ଲଭେସ୍ୱାଭିମାନ-
ଶ୍ଚରେଦ୍ବିଂକରେଣ ବ୍ରଜେଦ୍ଭୂଙ୍କଂ ବିଦେଶଂ ।
ପରାର୍ଥାନନାର୍ଥୀହରେଦ୍ଧୂର୍ତ୍ତବନ୍ଧୁଃ
ସୁତୋପ୍ତିଃ ସୌଖ୍ୟଂତମୋଲ୍ଲଭଗସ୍ତେତ୍ରୁ । ୧୧ ।

ରାହୁ ଏକାଦଶ ଭାବରେ ଥିଲେ ମନୁଷ୍ୟ ମ୍ଲେଚ୍ଛଜନଠାରୁ ଅର୍ଥ ଲାଭ-କରେ ସେ ବହୁ ଅଭିମାନୀ ହୁଅଇ । ଗୃହରେ ଥାଇ ବିଦେଶରେ ସକଳ ବ୍ୟବସାୟ କରଉଥାଏ ପରଧନ ହରଣ କରିବା ବୁଦ୍ଧିରେ ପ୍ରବଳ

ହୁଅଇ, ବନ୍ଧୁଜନ ଦ୍ୱାରା ଧନୋପାର୍ଜ୍ଜନ କରେ, ପୁତ୍ର ଲାଭରେ ସନ୍ତୁଷ୍ଟ ହୁଅଇ । ୧୧ ।

ତମୋଦ୍ୱାଦଶେସ୍ଥାନତାଂ ପାର୍ଶ୍ୱଶୂଳଂ
ପ୍ରଯତ୍ନୈକୃତେଽନର୍ଥତାମାତନୋତି ।
ଖଲୈର୍ମିତ୍ରତାଂ ସାଧୁଲୋକୈରଯୁଦ୍ଧଂ
ଦଦାତେ ମନୋବାଞ୍ଛିତାର୍ଥସ୍ୟ ସିଦ୍ଧିଂ । ୧୨ ।

ରାହୁ ଦ୍ୱାଦଶ ଭାବରେ ଥିଲେ ମନୁଷ୍ୟ ଦୁଃଖଭୋଗୀ ଓ କଟିପାର୍ଶ୍ୱ ଶୂଳ ରୋଗରେ ପୀଡ଼ିତ ହୁଅଇ । ସେ ଯେ କାର୍ଯ୍ୟାଦରେ ଯତ୍ନକରେ ଯତ୍ନରେ ଅନର୍ଥ ହୁଏ, ଖଳଜନରେ ମିତ୍ରତା ଓ ସାଧୁଜନରେ ଶତ୍ରୁଭାବ କରେ, ମନ ବାଞ୍ଛିତ ଅଯତ୍ନ କାର୍ଯ୍ୟରେ ସିଦ୍ଧି ଲାଭ ଓ ଅର୍ଥ ଲାଭ ହୁଅଇ । ୧୨ ।



## କେତୁଭାବ ଫଳଂ ।

ତନୁସ୍ଥଃଶିଖୀବାନ୍ଧବେ କ୍ଲେଶକର୍ତ୍ତା
ତଥା ଦୁର୍ଜ୍ଜନେଭ୍ୟୋ ଭୟଂ ବ୍ୟାକୁଳତ୍ୱଂ ।
କଳତ୍ରାଦିଚିନ୍ତା ସଦୋଦେଗତା ଚ
ଶରୀରେ ବ୍ୟଥାନୈକଧା ମାରୁତଃ ସ୍ୟାତ୍ । ୧ ।

କେତୁ ଲଗ୍ନଭାବରେ ଥିଲେ ମନୁଷ୍ୟ ଦୁଷ୍ଟଲୋକ ଦ୍ୱାରା ଭୟ ପ୍ରାପ୍ତ ହୋଇ ବ୍ୟାକୁଳିତ ହୁଅଇ । ଓ ଭ୍ରାତୃ ବର୍ଗାଦିରେ କ୍ଲେଶଭୋଗ କରଇ । ତାହାର ଚିତ୍ତ ସର୍ବଦା ଉଦ୍ବେଗ ହୁଅଇ, ସେ ସ୍ତ୍ରୀ ପୁତ୍ରାଦିଙ୍କ ନିମନ୍ତେ ଚିନ୍ତିତ ହୋଇଥାଇ । ନିଜ ଶରୀରେ ବାୟୁରୋଗ ଦ୍ୱାରା କ୍ଲେଶଭୋଗ କରୁଥାଏ । ୧ ।

ଧନେକେତୁରବ୍ୟଗ୍ରତାକିଂ ନରେଶା-
ଦ୍ଧନେଧାନ୍ୟନାଶୋ ମୁଖେରୋଗକୃଚ୍ଚ ।
କୁଟୁମ୍ବାଦ୍ୱିରୋଧୋବଚଃ ସହୃତଂ ବା
ଭବେତ୍ସ୍ୱେଗୃହେ ସୌମ୍ୟଗେହେଽତିସୌଖ୍ୟଂ । ୨ ।

କେତୁ ଧନ ଭାବରେ ଥିଲେ ମନୁଷ୍ୟର ରାଜଦ୍ୱାରା ଧନହାନି ହୁଏ

ଅର୍ଥ ବ୍ୟଗ୍ର ନାମରେ ସମ୍ପାଦିତ ଧାନ୍ୟ ବ୍ୟଗ୍ର କରଇ । ମୂଖରୋଗୀ କୁଟୁମ୍ବେ ବିରୋଧୀ ଶତ୍ରୁଭିବ ହୁଅଇ । ଯଦି କେତୁ ଉତ୍ତମ ବର୍ଗାଦିରେ ବା ମୀନରାଶିରେ ବା ଶୁଭଯୁକ୍ତ ହୋଇ ଧନଭାବରେ ରହିଥାଇ ତେବେ ଅନିଷ୍ଟ ନ ହୋଇ ଉପରୋକ୍ତ ଫଳର ବିପରୀତ ଶୁଭଫଳ ହୁଅଇ । ରାଜାଠାରୁ ଧନଲାଭ ଓ ଧାନ୍ୟବୃଦ୍ଧି ଅର୍ଥଯୁକ୍ତ ନୀରୋଗୀ କୁଟୁମ୍ବେ ସୁଖ ହୁଅଇ । ୨ ।

ଶିଖୀତୃତୀୟେ ଶତ୍ରୁନାଶଂ ବିବାଦଂ
ଧନଂ ଭୋଗମୈଶ୍ୱର୍ଯ୍ୟତେଜୋଽଧିକଂ ଚ ।
ସୁହୃଦ୍‌ବର୍ଗନାଶଂ ସଦା ବାହୁପୀଡ଼ା-
ଭୟୋଦ୍ବେଗଚିନ୍ତାକୁଳତ୍ୱଂ ବିଧତ୍ତେ । ୩ ।

କେତୁ ତୃତୀୟ ଭବରେ ଥିଲେ ମନୁଷ୍ୟ ଶତ୍ରୁହନ୍ତା ଧନବାନ୍ ଓ ଭୋଗୀ ଐଶ୍ୱର୍ଯ୍ୟବାନ୍ ତେଜୋବନ୍ତ ହୁଅଇ । ୩ ।

ଚତୁର୍ଥେ ନ ମାତୁଃ ସୁଖଂ ନୋ କଦାଚି-
ତ୍ସୁହୃଦ୍‌ବର୍ଗତଃ ପୈତୃକଂ ନାଶମେତି ।
ଶିଖୀବନ୍ଧୁବର୍ଗାତ୍ସୁଖଂ ସ୍ୱୋଚ୍ଚଗେହେ
ଚିରଂନୋ ବସେତ୍ ସ୍ୱଗେହେ ବ୍ୟଗ୍ରତାଚ । ୪ ।

କେତୁ ଚତୁର୍ଥ ଭବରେ ଥିଲେ ମନୁଷ୍ୟ ମାତୃ ଓ ଭ୍ରାତୃ ସୁଖରେ ହୀନ ହୁଅଇ । ପୈତୃକଧନ ବିନାଶ ହୁଏ ମୀନ ଓ ଧନୁ ରାଶିରେ କେତୁ ଅବସ୍ଥିତ କରିଥିଲେ ଉପରୋକ୍ତ ଫଳ ବିପରୀତ, ମାତୃ ଭ୍ରାତୃ ଓ ପିତୃ-ଧନରେ ସୁଖଲାଭ କରଇ ଧନବାନ୍ ହେଲେ ମଧ ଚିରକାଳ ସ୍ୱଗୃହେ ବାସ ନ କରି ବିଦେଶବାସୀ ହୁଅଇ । ୪ ।

ଯଦା ପଞ୍ଚମେ ରାହୁପୁଚ୍ଛଂ ପ୍ରଯାତି
ତଦା ସୋଦରେ ଘାତବାତାଦିକଷ୍ଟଂ ।
ସ୍ୱବୁଦ୍ଧି ବ୍ୟଥା ସନ୍ତତଃ ସ୍ୱଳ୍ପପୁତ୍ରଃ
ସଦାସୌ ଭବେଦ୍‌ବୀର୍ଯ୍ୟଯୁକ୍ତୋ ନରୋଽପି । ୫ ।

କେତୁ ପଞ୍ଚମ ଭବରେ ଥିଲେ ମନୁଷ୍ୟର ଭାଇ ବାତରୋଗାଦି ଦ୍ୱାରା ପୀଡ଼ିତ ନିଜର ବୁଦ୍ଧି ମାନ୍ଦ୍ୟ ଓ ଅଳ୍ପପୁତ୍ର ବଳବାନ୍ ନୀରୋଗୀ ହୁଅଇ।୫।

ତମଃଷଷ୍ଠଭାଗେ ଗତେ ଷଷ୍ଠଭାବେ
ଭଟ୍ଟବନ୍ଧାତୁଲାନ୍ମାନଭଙ୍ଗୋରଦୂଣାଂ ।
ବିନାଶଶ୍ଚତୁଷ୍ପାତ୍ସୁଖଂ ତୁଚ୍ଛଚଉଂ
ଶରୀରେ ସଦାନାମୟଂ ବ୍ୟାଧିନାଶଃ । ୬ ।

କେତୁ ଷଷ୍ଠ ଭାବରେ ଥିଲେ ମନୁଷ୍ୟ ନିଜ ମାମୁଁର ମାନହାନି ଓ ରିପୁମାନଙ୍କୁ ବିନାଶ କରେ ତାହାର ଚତୁଷ୍ପାଦ ( ଗୋରୁ ମହିଷ ) ଅଢ ବହୁତ ହୁଅନ୍ତି ଶରୀର ନିରୋଗୀ ହୁଅଇ । ସେ ସୁଖ ଭୋଗରେ ଅନିଚ୍ଛକ ( ଇଚ୍ଛା ରହିତ ) ହୋଇଥାଏ । ୬ ।

ଶିଖୀ ସପ୍ତମେ ଭୂୟସୀମାର୍ଗଚିନ୍ତା
ନିବୃତ୍ତିଃ ସ୍ୱନାଶେଽଥବା ବାରିଙ୍ଗତଃ ।
ଭବେତ୍କୀଟଗଃ ସର୍ବଦା ଲାଭକାରୀ
କଳତ୍ରାଦିପୀଡ଼ା ବ୍ୟୟୋବ୍ୟଗ୍ରତାଚେତ୍ । ୭ ।

କେତୁ ସପ୍ତମ ଭାବରେ ଥିଲେ ମନୁଷ୍ୟ ଗମନ କରିବା (ଚାଲିଯିବାକୁ) ଚିନ୍ତିତ ହୁଏ । ତାହାର ସର୍ବସ୍ୱାନ୍ତ ଧନହାନି ହୁଅଇ । ଜଳମଗ୍ନ ଭୟ ସମୟେ ୨ ଭୋଗ କରେ ତାହାର ସ୍ତ୍ରୀରୋଗଯୁକ୍ତ ହୁଏ । ନିଜେ ଅର୍ଥ ବ୍ୟୟ କରିବାକୁ ବ୍ୟଗ୍ରତା ହୋଇ ବ୍ୟୟ କରେ । ଯଦି ବିଛା ରାଶିରେ କେତୁ ଅବସ୍ଥିତ ହୋଇ ଲଗ୍ନକୁ ସପ୍ତମ ହୁଅଇ ଏହି ଫଳର ବିପରୀତ ସମସ୍ତ ଶୁଭ-ଫଳଭୋଗୀ ଓ ଲାଭକାରୀ ହୁଅଇ । ୭ ।

ଗୁଦଂ ପୀଡ୍ୟତେଽର୍ଶାଦିରୋଗୈରବଶ୍ୟଂ
ଭୟଂ ବାହନାଦେଃ ସ୍ୱଦ୍ରବ୍ୟସ୍ୟରୋଧଃ ।
ଭବେଦଷ୍ଟମେ ରାହୁପୁଚ୍ଛେଽର୍ଥଲାଭଃ
ସଦାକୀଟକନ୍ୟାଜଗୋଯୁଗ୍ମକେତୁଃ । ୮ ।

କେତୁ ଅଷ୍ଟମ ଭାବରେ ଥିଲେ ମନୁଷ୍ୟ ଅର୍ଶରୋଗ ଦ୍ୱାରା ଗୁଦପୀଡ଼ା କ୍ଳେଶ କରେ, ଯାନ ବାହନଭୋଗୀ ହେଲେ ମଧ୍ୟ ଯାନ ବାହନ ଆରୋ-ହଣରେ ଭୟ ଜାତ ହୁଅଇ । ସ୍ୱଦ୍ରବ୍ୟ ଦ୍ୱାରା ନିଜ କାର୍ଯ୍ୟ ଅସାଧନ କରେ ଯଦି କେତୁ ମେଷ ବୃଷ ବିଛା କନ୍ୟାରାଶିରେ ଅବସ୍ଥିତ ହୋଇ

ଲଗ୍ନକୁ ଅଷ୍ଟମ ହୋଇଥାଏ ତେବେ ଏହି ଫଳ ନ ହୋଇ ଏହାର ବିପରୀତ ଶୁଭ ଫଳ ଭୋଗ କରଇ । ୮ ।

ଶିଖୀଧର୍ମଭାବେ ଯଦାକ୍ଲେଶନାଶଃ
ସୁତାର୍ଥୀ ଭବେନ୍ମ୍ଳେଚ୍ଛତୋ ଭାଗ୍ୟବୃଦ୍ଧିଃ ।
ସହୋତ୍ଥବ୍ୟଥାଂ ବାହୁରୋଗଂ ବିଧତ୍ତେ
ତପୋଦାନତୋ ହ୍ରାସବୃଦ୍ଧିଂ ତଦାନୀଂ । ୯ ।

କେତୁ ନବମ ଭାବରେ ଥିଲେ ମନୁଷ୍ୟ ଶରୀର ନିରୋଗୀ ସୁତ ସମ୍ବନ୍ଧେ କ୍ଳେଶୀ ମ୍ଳେଚ୍ଛ ମନ୍ଦଜନସଂସର୍ଗୀ ଅର୍ଥଲାଭକାରୀ ହୁଅଇ, ସହୋଦର(ଭାଇ) ଠାରେ ପୀଡ଼ାଯୁକ୍ତ ବା ନିଜବାହୁରେ କ୍ଳେଶଭୋଗ କରଇ ଏବଂ ସେ ଯାହାକିଛି ତପ ଓ ଦାନାଦି ସତ୍କର୍ମ କରେ ତାହାକୁ ସଂସାର ଲୋକେ ଉପହାସ କରନ୍ତି । ୯ ।

ପିତୁର୍ନୋସୁଖଂ କର୍ମଗୋ ଯସ୍ୟ କେତୁ
ସ୍ତଦା ଦୁର୍ଭଗଂ କଷ୍ଟଭାଜଂ କରୋତି ।
ତଦା ବାହନେ ପୀଡ଼ିତଂ ଜାତୁ ଜନ୍ମ
ବୃଷାଜାଳିକନ୍ୟାସ୍ୱଚେଚ୍ଛନ୍ନୁନାଶଂ । ୧୦ ।

କେତୁ କର୍ମ ଭାବରେ ଥିଲେ ମନୁଷ୍ୟ ପିତୃ ସୁଖରେ ହୀନ ହୁଅଇ ଅକର୍ମବାନ୍ କଷ୍ଟଭୋଗୀ ଓ ବାହନଦ୍ୱାରା ପୀଡ଼ିତ ହୁଅଇ । ଯଦି କେତୁ ବୃଷ ମେଷ ବୃଶ୍ଚିକ କନ୍ୟାରାଶିରେ କର୍ମଭାବେ ସ୍ଥିତ ହୋଇଥାଇ ଉପରୋକ୍ତ ଅଶୁଭ ଫଳ ନ ହୋଇ ଶୁଭଫଳପ୍ରଦ ଧନବାନ୍ ଯାନବାହନ ଭୋଗୀ ଓ ପିତୃ ସୁଖୀ ହୋଇଥାଇ । ୧୦ ।

ସୁଭଗ୍ୟଃସୁବିଦ୍ୟାଧିକୋଦର୍ଶନୀୟଃ
ସୁଗାତ୍ରଃ ସୁବସ୍ତ୍ରଃ ସୁତେଜୋଽପିତସ୍ୟ ।
ଦରେ ପୀଡ୍ୟତେ ସନ୍ତତି ର୍ଦୁର୍ଭଗା ଚ
ଶିଖୀଲାଭଗଃ ସର୍ବଲାଭଂ କରୋତି । ୧୧ ।

କେତୁ ଏକାଦଶ ଭାବରେ ଥିଲେ ମନୁଷ୍ୟ ଉତ୍ତମ ଭାଗ୍ୟବାନ୍ ଓ ବିଦ୍ୟାବାନ୍ ଦର୍ଶନ ଶାସ୍ତ୍ରାଦିରେ ପାରଦର୍ଶୀ ଶରୀର ସୁନ୍ଦର ହୁଅଇ ସେ ଉତ୍ତମ ବସ୍ତ୍ର ପ୍ରହରଣ କରଇ ଓ ତେଜୋବନ୍ତ ଖ୍ୟାତବାନ୍ ହୁଅଇ ।୧୧।

ଶିଖୀରନ୍ଧ୍ରଗୋବସ୍ତି ଗୁହ୍ୟାଙ୍ଘ୍ରି ନେତ୍ରେ
ରୁଜା ପୀଡ଼ନଂ ମାତୁଲାନ୍ନୈବଶର୍ମ ।
ସଦା ରାଜତୁଲ୍ୟଂ ନରଃ ସଦ୍ବ୍ୟୟଂ ଚ
ରିପୂଣାଂ ବିନାଶଂ ରଣେଽପି କରୋତି । ୧୬ ।

କେତୁ ଦ୍ୱାଦଶ ଭାବରେ ଥିଲେ ମନୁଷ୍ୟ ବସ୍ତିଗୁଦପାଦ ଓ ନେତ୍ରରେ ପୀଡ଼ା ଭୋଗକରେ ତାହାର ମାତୁଳ ସୁଖବର୍ଜ୍ଜିତ ହୁଅଇ । ସର୍ବଦା ରାଜତୁଲ୍ୟ ଭୋଗୀ ଓ ସଦ୍‌ବ୍ୟୟକାରୀ ହୁଅଇ । ରିପୁହନ୍ତା ହୋଇ ଯୁଦ୍ଧ ଜୟଲାଭ କରେ । ୧୬ ।



## ହିନ୍ଦି ଓ ପାରସି କଥାନୁସାରେ ରାଜ-ଯୋଗ ଲକ୍ଷଣର ନିୟମାଦି ।

ଯଦା ମୁସ୍ତରୀ କର୍କଟେ ବା କମାଣେ
ଯଦା ଚଶ୍ମ ଖୋରା ଯମିନ୍ ଅଶମାନେ ।
ତଦା ଜ୍ୟୋତିଷେ କ୍ୟା ଚନେଗା ଶୁନେଗା
ହୁବାଦାଲକାବାଦଶାହ୍ନ କରେଗା । ୧ ।

ଯଦି ବୃହସ୍ପତି କର୍କଟ ବା ଧନୁରାଶିରେ ଅବସ୍ଥିତ କରଥାଏ ଓ ଶୁକ୍ର ଲଗ୍ନ ବା କର୍ମଭାବରେ ଅବସ୍ଥିତ କରେ ଏହି ଯୋଗରେ ଜନ୍ମ ବାଳକ ରାଜତୁଲ୍ୟ ସୁଖ ଭୋଗ କରଇ । ୧ ।

ଯଦା ମାହତାପୋ ଭବେନ୍ମାଲଖାନେ
ମିରୀଖ ମୁସ୍ତରୀ ବର୍ତ୍ତିତେ ଅଶମାନେ ।
ତତାରହୁ ବଲ୍‌ଲଗ୍ନେ ନରଃ ପୁଣ୍ୟବନ୍ତୋ
ଅବାଦରଦାରୋ ଅବା ବାଦସାହୋ । ୨ ।

ଯଦି ଜନ୍ମ ସମୟେ ଯାହାର ଚନ୍ଦ୍ର ଧନସ୍ଥାନରେ ମଙ୍ଗଳ ବା ବୃହସ୍ପତି କର୍ମରେ ଓ ବୁଧ ଲଗ୍ନରେ ଅବସ୍ଥିତ କରଥାନ୍ତି ଏହି ଯୋଗ ହେଲେ ମନୁଷ୍ୟ ରାଜପାର୍ଶ୍ୱେ ମନ୍ତ୍ରୀ ବା ରାଜସମ୍ପଦଭୋଗ ନତୁବା ରାଜା ହୁଅଇ ॥

ଅନ୍ୟସ୍ଥାନେ ରହିଥିବା ମାଲଖାନେ ମୁସ୍ତରୀ ।
ଯାବଖାନେ ଚନ୍ଦ୍ରଶଂ ବାଦସାହ ବମ୍ତର । ୩ ।

ଯାହାର ଜାତକେ ଶୁକ୍ର ଏକାଦଶ ଭାବରେ ଓ ବୃହସ୍ପତି ଧନଭାବେ ବୁଧ ଲଗ୍ନଭାବେ ଅବସ୍ଥିତ କରିଥାନ୍ତି ସେ ମନୁଷ୍ୟ ରାଜା ବା ରାଜସମ୍ପଦ ଭୋଗି ବହୁତ ବ୍ୟୟ କରି ଯଶ ଲଭ କରଇ । ୩ ।

ଅଗରସ୍ତୁଶୁକ୍ରଖୋରାସ୍ଥିତା ଲଗ୍ନସଙ୍ଗି
ଶଖ୍ସରେ ଦଗଡ୍‌ବାଜ୍ ଶୟତାନ ଯଙ୍ଗେ ।
ଇହିଁ ଯୋଗଜାତୋ ଯଦସାଯିଦ୍ସ୍ୟାନା
ଦରୋଜ୍ ବରରୋଜ୍ ମିଲେ ଖୁବ୍‌ଖାନା । ୪ ।

ଯାହାର ଜାତକେ ଶୁକ୍ର ଲଗ୍ନଭାବରେ ଅବସ୍ଥିତ କରିଥାଏ ସେ ମନୁଷ୍ୟର ଶରୀର ସୁନ୍ଦରତା ଓ ସେ ଦଗାବାଜ୍ ଶଇତାନ୍ ବଳବାନ୍ ହୁଅଇ ଏହି ଯୋଗରେ ନୀଚ ଓ ଗରିବର ପୁତ୍ର ହୋଇଥିଲେ ମଧ୍ୟ ସେ ଧନବାନ୍ ହୋଇ ସୁଖଭୋଗ କରେ, ତାହାକୁ ପ୍ରତ୍ୟହ ଉତ୍ତମ ପଦାର୍ଥ ଭୋଜନ କରିବାକୁ ମିଳଇ । ୪ ।

ଧନସ୍ଥେ କୁମୁଦା ତନସ୍ଥେ ଯୋହୋରା
ଯଦାମେକ ଯୁକ୍ତୋ ତଦା ଖୁବ୍ ଚେହାରା
ଧନୀ ମାନଦାସ୍ତୁ ଶଇତାନ ଧୀରା
ନରେଶୋଦଗଡ଼୍‌ବାଜ୍ ବହୁ ବକ୍‌ତନ ଖୋସ୍ର । ୫ ।

ଯାହାର ଧନସ୍ଥାନେ ଚନ୍ଦ୍ର ଓ ଲଗ୍ନସ୍ଥାନେ ଶୁକ୍ର ନତୁବା ଏ ଦୁହିଙ୍କ ମଧ୍ୟରୁ ଧନେ ଚନ୍ଦ୍ର ବା ଲଗ୍ନେ ଶୁକ୍ର ଅବସ୍ଥିତ କରଇ ଏ ଯୋଗରେ ଜାତ ମନୁଷ୍ୟ ଚେହେରାବନ୍ତ ଧନୀ ମାନ୍ୟବାନ୍ ହୁଏ । ତାହାର ଶଇତାନ୍ ( କି ମନ୍ଦବୁଦ୍ଧି ) ଓ ଧୀର ବୁଦ୍ଧି କାର୍ଯ୍ୟବଶେ ଉଭୟ ହୁଅଇ ମଧ ସେ ଦଗାବାଜ୍ ପଣ କରେ ଓ ବହୁତ କଥା କହିପାରଇ । ୫ ।

ଯଦା ଭାଗ୍ୟମାଲିକ୍ ଭଲେ ଘରେ ପଡ଼େ
କାମାଏକର୍ ତ୍ରୌଲତ ଖାଜାନାମେ ଭରେ
ଯଦା ଧନ ମାଲିକ୍ ନଧନମେ ପଡ଼େ
ଧନପୂର୍ଣ୍ଣ ହୁଇଥିଁ ପାସକାଛି ଲେହେଁ । ୬ ।

ଯଦି ନବମାଧିପ ମିତ୍ର ଉଚ୍ଚମୂଳ ତ୍ରିକୋଣାଦି ଶୁଭ ଭାବ ଭୁବନରେ ଅବସ୍ଥିତ କରିଥାଏ ତେବେ ମନୁଷ୍ୟ ଏତେ ପଇସା ରୋଜଗାର କରେ ଯେ ସରକାର ଖଜଣା ଖାନାରେ ଜମା ରଖଇ ଯଦି ଧନାଧିପ ଅଷ୍ଟମସ୍ଥ ହୋଇଥାଏ ତେବେ ଧନପୁତ୍ର ହେଲେ ମଧ ତାହାକୁ ଅର୍ଥାଭାବ ହେତୁ ସେ ଘାସ କାଟି ଅର୍ଥଉପାର୍ଜନ କରିବା ପର୍ଯ୍ୟନ୍ତ ଇଚ୍ଛା କରଇ । ୬ ।

ଯଦା ଭାଗ୍ୟ ମାଲିକ୍ ଅଶ୍ଵମାନ୍ମେ ପଡ଼େ
ଅଶ୍ଵମାନ୍କା ମାଲିକ ଭାଗ୍ୟଖାନେ ଲେଟେ
ଇହିଁ ଯୋଗ ଜାତୋ ଯଦା ଦାସୀପୁତୋ
ହବେ ବାଦଶାହୋଅଥବା ରାଜ୍ୟନାଥୋ । ୭ ।

ଯେ ମନୁଷ୍ୟର ଜନ୍ମକାଳରେ ଦଶମାଧିପତି ନବମରେ ଓ ନବମାଧିପତି ଦଶମରେ ଥାଏ ଦାସୀ ପୁତ୍ର ହୋଇ ଜନ୍ମ ହୋଇଥିଲେ ସୁଦ୍ଧା ମନଷ୍ୟ ରାଜା ବା ରାଜତୁଲ୍ୟ ସମ୍ପଦ ଭୋଗ କରଇ । ୭ ।

କେନ୍ଦ୍ରେ ଗୌ ଠୌ ଚନ୍ଦ୍ରେ ଗୌ ଠୌ ଠୌ ଗୌ ଗୁରୁ ସଂଯୁକ୍ତା ।
ଇହା ଯୋଗ ଜାତେ ମହମଦ ବା ଯେ ବାନ୍ଧେ ଗଜବର ମୁକ୍ତା । ୮ ।

ଯେ ମନୁଷ୍ୟର ଜନ୍ମ କାଳରେ କେନ୍ଦ୍ରସ୍ଥ ବା ଚନ୍ଦ୍ର ସହିତ ବା ବୃହସ୍ପତି ସହିତ ଶୁକ୍ରଗ୍ରହ ହୁଅନ୍ତି ସେ ମନୁଷ୍ୟର ନିତ୍ୟ ବାଦ୍ୟ ଉତ୍ସବ ହେଉଥାଏ ଓ ସେ ହସ୍ତି ଘୋଡ଼ାଦି ରଖିବା ସମ୍ପତ୍ତିର ମାଲିକ ହୁଅଇ । ।

ସମାପ୍ତ ।



Ptd by NITYANAND SAHOO A PRESS CUTTACK

# ବିଜ୍ଞାପନ ।

ନିମ୍ନଲିଖିତ ପୁସ୍ତକମାନ କଟକ ବାଲୁବଜାର୍ ଅରୁଣୋଦୟ ପ୍ରେସରେ ବିକ୍ରୟାର୍ଥେ ପ୍ରସ୍ତୁତ ଅଛି ।

| | |
|---|---|
| ମହାଭାରତ ଆଦ୍ୟପର୍ବ | ଷ ୧ ଶ୍ରୀ ଟ ୵୫ |
| ,, ମଧ୍ୟପର୍ବ | ଷ ୧ ଶ୍ରୀ ଟ ୵୫ |
| ,, ସଭାପର୍ବ | ଷ ୧ ଶ୍ରୀ ଟ ୵୫ |
| ,, ବନପର୍ବ | ଷ ୧ ଶ୍ରୀ ଟ ୵୫ |
| ,, ବିରାଟପର୍ବ | ଷ ୧ ଶ୍ରୀ ଟ ୧। |
| ,, ଉଦ୍ୟୋଗପର୍ବ | ଷ ୧ ଶ୍ରୀ ଟ ୧ ( |
| ,, ଭୀଷ୍ମପର୍ବ | ଷ ୧ ଶ୍ରୀ ଟ ୧। |
| ,, ଦ୍ରୋଣପର୍ବ | ଷ ୧ ଶ୍ରୀ ଟ ୦ ୫ |
| ,, କର୍ଣ୍ଣପର୍ବ | ଷ ୧ ଶ୍ରୀ ଟ ୦ ।୷ |
| ଶଲ୍ୟପର୍ବ | ଷ ୧ ଶ୍ରୀ ଟ ୦ ୷ |
| [illegible]ାପର୍ବ | ଷ ୧ ଶ୍ରୀ ଟ ୦ ୷ |
| ,, [illegible]ଶିକା ବା ଐଷିକପର୍ବ | ଷ ୧ ଶ୍ରୀ ଟ ୦ |
| ,, ନାରୀ ଓ ଶାନ୍ତିପର୍ବ | ଷ ୧ ଶ୍ରୀ ଟ ୦ ୷ |
| ,, ଅଶ୍ୱମେଧ ଓ ଆଶ୍ରମିକପର୍ବ | ଷ ୧ ଶ୍ରୀ ଟ ୦ ।୷ |
| ,, ମୁଷଳୀପର୍ବ | ଷ ୧ ଶ୍ରୀ ଟ ୦ ।୷ |
| ,, ସ୍ୱର୍ଗାରୋହଣପର୍ବ | ଷ ୧ ଶ୍ରୀ ଟ ୦ ।୷ |
| ବିଷ୍ଣୁ କେଶଶ୍ୱ ପୁରାଣ ୧ମ ସର୍ଗ | ଷ ୧ ଶ୍ରୀ ଟ ୧। |
| ,, ୨ୟ ,, | ଷ ୧ ଶ୍ରୀ ଟ ୧( |
| ,, ୩ୟ ,, | ଷ ୧ ଶ୍ରୀ ଟ ୧ ( |
| ,, ୪ର୍ଥ ,, | ଷ ୧ ଶ୍ରୀ ଟ ୦ ।୷ |
| ,, ୫ମ ,, | ଷ ୧ ଶ୍ରୀ ଟ ୦୫୷ |
| ସଙ୍ଗୀତ ବୃନ୍ଦବଦନା ୧ମ ଦୃଶ୍ୟ | ଷ ୧ ଶ୍ରୀ ଟ ୦ ୷ |
| ଚୋମପଦ୍ମାଶୋକ | ଷ ୧ ଶ୍ରୀ ଟ ୦(୯ |
| ବସନ୍ତଉତ୍ସବ | ଷ ୧ ଶ୍ରୀ ଟ ୦ ।/ |
| କଟଶୋଷବୋଧଚଭିତିଶା | ଷ ୧ ଶ୍ରୀ ଟ ୦ / |

ଅରୁଣୋଦୟ ପ୍ରେସ
ବାଲୁବଜାର କଟକ }

ମେନେଜର
ଶ୍ରୀ ନାରାୟଣଚନ୍ଦ୍ର ଦାନ୍